-ର୍ଯ୍ୟ ହରିହର ଶିଶୁଭବନ
ସାକ୍ଷୀଗୋପାଳ, ପୁରୀ

The book has been printed with the paper made available by the Government of India through Government of Orissa at concessional price.

ପ୍ରଥମ ପ୍ରକାଶ : ୧୯୮୧
ମକର ସଂକ୍ରାନ୍ତି



ମୁଦ୍ରାକର :
ଜାନକୀନାଥ ହାଲଦାର,
ପାୟୋନିଅର ପ୍ରେସ୍, କଟକ-୮



# ମୁଖବନ୍ଧ

ଆଚାର୍ଯ୍ୟ ହରିହର ଦାଶଙ୍କର ଜୀବନୀ ଓ କାର୍ଯ୍ୟକଳାପ ଏ ପର୍ଯ୍ୟନ୍ତ ମୁଦ୍ରିତ ଓ ପ୍ରକାଶିତ ହୋଇ ନାହିଁ । ଏଥିପାଇଁ ଯେଉଁ ଅଟଳ ନିଷ୍ଠା ଓ ଆନୁଗତ୍ୟ ଆବଶ୍ୟକ, ତାହା ଆମ୍ଭମାନଙ୍କ ମଧ୍ୟରୁ ଅଳ୍ପ କେତେକଙ୍କର ଥାଇପାରେ ବୋଲି ମୋର ବିଶ୍ୱାସ ।

ଆଚାର୍ଯ୍ୟଙ୍କ ସ୍ମରଣିକା ପ୍ରକାଶିତ ହୋଇ ଜନସାଧାରଣଙ୍କୁ ତାଙ୍କ ଜୀବନର ବିଶଦ ଆଲେଖ୍ୟ ପ୍ରଦାନ କରୁଅଛୁ । ତାଙ୍କର ଏକନିଷ୍ଠ ସେବକ ଶ୍ରୀ ସଚ୍ଚିଦାନନ୍ଦ ମହାନ୍ତି 'ଆଚାର୍ଯ୍ୟ ସାନ୍ନିଧ୍ୟେ' ବୋଲି ଗୋଟିଏ ବିରାଟ ଗ୍ରନ୍ଥର ପରିକଳ୍ପନା କରିଥିଲେ । ଏଥି ନିମିତ୍ତ ସେ ନାନା ସ୍ଥାନ ବୁଲି ଆଚାର୍ଯ୍ୟଙ୍କ ସମ୍ବନ୍ଧରେ ପ୍ରାମାଣ୍ୟ ଲିପି ସଂଗ୍ରହ କରିଥିଲେ । ଏହା ଆଲୋକ ଦେଖିବାକୁ କେତେ ଦିନ ଲାଗିବ, ତାହା ମୁଁ ଠିକ୍ ଭାବରେ କହିପାରୁ ନାହିଁ । ଶ୍ରୀ ବିନୋଦ କାନୁନ୍‌ଗୋ 'ସତ୍ୟର ପୂଜାରୀ ଆଚାର୍ଯ୍ୟ ହରିହର' ଶୀର୍ଷକ ପ୍ରବନ୍ଧରେ ଅନେକଗୁଡ଼ିଏ ସ୍ମରଣୀୟ ଓ ଉପଯୋଗୀ ବିଷୟ ଉଲ୍ଲେଖ କରିଅଛନ୍ତି । ବାସ୍ତବିକ ସର୍ବୋଦୟ ଓ ଭୂଦାନ ଯାହା ସମ୍ବନ୍ଧରେ ଯାହାର ପ୍ରତ୍ୟକ୍ଷ ଜ୍ଞାନ ନ ଥିବ, ସେ ତାଙ୍କ ଜୀବନୀ ଉପରେ କିଛି ରେଖାପାତ କରିପାରିବ ବୋଲି ଆଶାପୋଷଣ କରିବା ନିଷ୍ପ୍ରୟୋଜନ ।

ଏହି କ୍ଷୁଦ୍ର ଗ୍ରନ୍ଥରେ ଆଗୃର୍ଯ୍ୟଙ୍କ ସମ୍ବନ୍ଧରେ ମୁଁ ନିଜର ଅନୁଭୂତିକୁ କେନ୍ଦ୍ର କରି ଯାହା ଲେଖିଅଛି, ତାହା ସମ୍ପୂର୍ଣ୍ଣ ସ୍ୱକୀୟ ଓ ମୌଳିକ ଚିନ୍ତା । ସର୍ବୋଦୟ ଓ ଭୂଦାନ ଯାତ୍ରାର ବିବରଣୀ ସମ୍ବନ୍ଧରେ ଉପସ୍ଥିତ ଲେଖକ ଯାହା ଲେଖିଅଛି, ତାହା ଶ୍ରୀ ବିନୋଦ କାନୁନ୍‌ଗୋ ଓ ଶ୍ରୀ ସଚ୍ଚିଦାନନ୍ଦ ମହାନ୍ତିଙ୍କ ପ୍ରଦତ୍ତ ବିବରଣୀଗୁଡ଼ିକରୁ ଗୃହୀତ । ଆଗୃର୍ଯ୍ୟ ହରିହର ସର୍ବୋଦୟ ସମ୍ମିଳନୀର ସଭାପତିରୂପେ ନିର୍ବାଚିତ ହୋଇଥିଲେ । ସଭାପତି ରୂପେ ସେ ଦେଇଥିବା ଅଭିଭାଷଣ ଗୋଟିକୁ ପାଇବା ମୋ ପକ୍ଷେ କଷ୍ଟକର ଥିଲା ।

ଆଗୃର୍ଯ୍ୟ ମହାଶୟଙ୍କ ସର୍ବୋଦୟ ଯାତ୍ରା ସମ୍ବନ୍ଧରେ ବିଶେଷ ବିବରଣୀ ସଂଗ୍ରହ କରିବା ପାଇଁ ମୁଁ ବାମନବାବୁଙ୍କୁ ଅନୁରୋଧ କରିଥିଲି । ପୁରୀର ଶ୍ରୀ ଜଗନ୍ନାଥ ମିଶ୍ର, କଟକ ଭୂଦାନ ମଣ୍ଡଳର ଜଣେ ମୁଖ୍ୟ କର୍ମକର୍ତ୍ତା ଶ୍ରୀ ଫକୀର ମିଶ୍ର ଆଦି ଅନେକଙ୍କ ସହିତ ସଂଯୋଗ ସ୍ଥାପନ କରାଯାଇଥିଲା; କିନ୍ତୁ ଏ ସମ୍ପର୍କରେ କିଏ କୌଣସି ବିବରଣୀ ଦେଇପାରିଲେ ନାହିଁ । ଏହା ଓଡ଼ିଆ ଜାତି ପକ୍ଷରେ କମ୍ ଦୁର୍ଭାଗ୍ୟର ବିଷୟ ନୁହେଁ ।

ଯାହା ହେଉ, ବାମନବାବୁଙ୍କ ପରାମର୍ଶ ଅନୁସାରେ ବହିର ନାମ 'ଆଗୃର୍ଯ୍ୟ ହରିହର' ଦିଆ ନ ଯାଇ ଦିଆଯାଇଛି, "ଭଲ ମଣିଷ ହୁଅ" । ସତ କହିଲେ, ସରଳ ସୁନ୍ଦର ହୃଦୟସ୍ପର୍ଶୀ ଆଦେଶ ଓ ଉପଦେଶ ଓଡ଼ିଶାରେ ଆଗୃର୍ଯ୍ୟ ହରିହରଙ୍କ ପରି ଆଉ କେତେ ଜଣ ଦେଇଅଛନ୍ତି ?

ସାକ୍ଷୀଗୋପାଳ, ସତ୍ୟବାଦୀ ହାଇସ୍କୁଲର ଉତ୍ସାହୀ ଓ ନିଷ୍ଠାପର ପ୍ରଧାନ ଶିକ୍ଷକଙ୍କ ସାଧୁ ପ୍ରଚେଷ୍ଟାରେ ଏବେ ଆଗୃର୍ଯ୍ୟ ହରିହରଙ୍କ ନାମରେ ଗୋଟିଏ 'ଶିଶୁଭବନ' ପ୍ରତିଷ୍ଠା କରାଯାଇଅଛି ।

ଏହି ବହିର ବିକ୍ରୟଲବ୍ଧ ଅର୍ଥରେ ମୋର କୌଣସି ଅଂଶ ନାହିଁ । ଏହା ଦେଶର ସଂପତ୍ତି । ଦେଶର ଉଦୀୟମାନ ବଂଶଧରଙ୍କ ମଧ୍ୟରେ ଏହି ବହିର ଯଥାର୍ଥ ସମାଦର ହେଲେ ଶ୍ରମ ସାର୍ଥକ ମନେକରିବି ।

ଶ୍ରୀରାମଚନ୍ଦ୍ରପୁର
ତା ୨୦ । ୪ । ୮୦

ଅଧ୍ୟାପକ ଶ୍ରୀ ଚିନ୍ତାମଣି ଦାଶ
ସତ୍ୟବାଦୀ ବନ-ବିଦ୍ୟାଳୟର
ପୂର୍ବତନ ଛାତ୍ର



# ସମ୍ପାଦକଙ୍କ ମୁଖବନ୍ଧ

ଐତିହାସିକ ସତ୍ୟବାଦୀ ବନବିଦ୍ୟାଳୟ ପ୍ରସଙ୍ଗ ଉଠିଲେ ଉତ୍କଳମଣି ଗୋପବନ୍ଧୁ, ଆଚାର୍ଯ୍ୟ ହରିହର, ପଣ୍ଡିତ ନୀଳକଣ୍ଠ, ପଣ୍ଡିତ ଗୋଦାବରୀଶ ଓ ପଣ୍ଡିତ କୃପାସିନ୍ଧୁଙ୍କ ନାମ ସ୍ୱତଃ ସ୍ମରଣକୁ ଆସେ। ସେହି ଐତିହାସିକ ସତ୍ୟବାଦୀ ବିହାରର ପୃଷ୍ଠଭୂମିରେ ଆଜର ସତ୍ୟବାଦୀ ସରକାରୀ ହାଇସ୍କୁଲଟି ଦଣ୍ଡାୟମାନ। ଏହି ବିଦ୍ୟାଳୟକୁ କେନ୍ଦ୍ରକରି ସେହି ମହାପୁରୁଷମାନଙ୍କର ସ୍ମୃତିକୁ ଚିରଜୀବିତ ରଖିବା ପାଇଁ କେତୋଟି ଅନୁଷ୍ଠାନ ଗଢ଼ି ତୋଳିବାର ଦୁଃସାହସିକ ପରିକଳ୍ପନା ଏହି ବିଦ୍ୟାଳୟର ଶିକ୍ଷକବୃନ୍ଦ, ଏ ଅଞ୍ଚଳର ଶିକ୍ଷାନୁଷ୍ଠାନମାନଙ୍କର କେତେକ ଉତ୍ସାହୀ ବ୍ୟକ୍ତି ୧୯୭୫ ମସିହାରେ ଚିନ୍ତା କଲେ।

ଏହି ପରିକଳ୍ପନାର ପ୍ରଥମ ପଦକ୍ଷେପ 'ଉତ୍କଳମଣି ଗୋପବନ୍ଧୁ ଶତବାର୍ଷିକୀ' ଉତ୍ସବ ପାଳନ। ରାଜ୍ୟସ୍ତରୀୟ ଉତ୍ସବ ବିଦ୍ୟାଳୟର ଆନୁକୂଲ୍ୟରେ ସତ୍ୟବାଦୀପୀଠରେ ପାଳିତ ହେଲା। ଶିକ୍ଷକମାନଙ୍କର 'ଦିବ୍ୟଜ୍ୟୋତି' ପରିକଳ୍ପନା ବିଶେଷ ଆଦୃତ ହୋଇ ସରକାରଙ୍କ ପ୍ରଚେଷ୍ଟାରେ ସାରା ଓଡ଼ିଶାରେ ପରିକ୍ରମା କଲା। 'ଉତ୍କଳମଣିଙ୍କ ସ୍ମରଣ'ରେ ବିଦ୍ୟାଳୟର ଛାତ୍ରମାନଙ୍କୁ ପର୍ଯ୍ୟଟନର ସ୍ଥାୟୀ ସୁବିଧା ଦେବା ପାଇଁ ଟ ୫୫୦୦.୦୦ର ଗୋଟିଏ ସ୍ଥାୟୀ ଜମା ଖୋଲାଗଲା ଏବଂ

ସରକାରଙ୍କ ଖର୍ଚ୍ଚରେ ଏହି ଅଞ୍ଚଳରେ ଗୋଟିଏ ପାଠାଗାର ପ୍ରତିଷ୍ଠିତ ହେଲା ।

ଇତି ମଧ୍ୟରେ 'ଓଡ଼ିଶା ନୀଳକଣ୍ଠ ସ୍ମୃତି କମିଟି' ଅନୁକମ୍ପାରୁ ଟ ୧୦୦୦.୦୦ର ଗୋଟିଏ ସ୍ଥାୟୀ ଜମା ସତ୍ୟବାଦୀ ସ୍କୁଲ ପାଇଁ ଖୋଲା ହୋଇଛି । ପଣ୍ଡିତ ନୀଳକଣ୍ଠଙ୍କ ଶ୍ରାଦ୍ଧବାର୍ଷିକୀ ପାଳିତ ହୋଇଛି । ତର୍କ ଓ ପ୍ରବନ୍ଧରେ କୃତୀ ଛାତ୍ରମାନଙ୍କୁ ଏହାର ସୁଧରୁ ପୁରସ୍କାର ରୂପେ ଦିଆଯାଇଛି ।

ଆଚାର୍ଯ୍ୟଙ୍କ ସ୍ମରଣରେ 'ଆଚାର୍ଯ୍ୟ ହରିହର ଶିଶୁଭବନ' ପ୍ରତିଷ୍ଠିତ ହୋଇଛି । ବନବିଦ୍ୟାଳୟର ପୁରାତନ ଛାତ୍ରମାନେ କହନ୍ତି, "ବନବିଦ୍ୟାଳୟ ଛାତ୍ରାବାସର ପରିଚାଳକ ଆଚାର୍ଯ୍ୟ ମହାଶୟଙ୍କ ବାତ୍ସଲ୍ୟ ସ୍ନେହ ବର୍ଣ୍ଣନାତୀତ ।" ତେଣୁ ଶିଶୁପ୍ରେମୀ ପୁଣ୍ୟଶ୍ଳୋକ ଆଚାର୍ଯ୍ୟ ହରିହରଙ୍କ ସ୍ମରଣରେ ଆନ୍ତର୍ଜାତିକ ଶିଶୁ ସମ୍ବତ୍ସରରେ ଗୋଟିଏ ଶିଶୁଭବନ ପ୍ରତିଷ୍ଠା କରିବା ପରିକଳ୍ପନା କରାଗଲା ।

ଏହି ପରିକଳ୍ପନାର ରୂପ ଦେବା ପାଇଁ ଆଖପାଖ ବିଦ୍ୟାଳୟର ଶିକ୍ଷକବୃନ୍ଦ ଓ ସ୍ଥାନୀୟ ମାନ୍ୟଗଣ୍ୟ ବ୍ୟକ୍ତିମାନଙ୍କୁ ନେଇ ଗୋଟିଏ ସଭା ଅନୁଷ୍ଠିତ ହେଲା ଓ ସଭାରେ ସର୍ବସମ୍ମତିକ୍ରମେ 'ଶିଶୁଭବନ' ପ୍ରତିଷ୍ଠା ପାଇଁ ଗୋଟିଏ 'Adhoc' କାର୍ଯ୍ୟକାରୀ କମିଟି ଗଢ଼ାଗଲା । ତା ୨୧-୨-୭୯ ତାରିଖ ଆଚାର୍ଯ୍ୟଙ୍କ 'ଶ୍ରାଦ୍ଧଦିବସ'ରେ ତିନୋଟି ଅନାଥ ଶିଶୁଙ୍କୁ ନେଇ ସତ୍ୟବାଦୀ ସ୍କୁଲ ପ୍ରାଙ୍ଗଣରେ ଥିବା ଗୋଟିଏ କୋଠରୀରେ ଅନୁଷ୍ଠାନଟି 'ସମାଜ' ସମ୍ପାଦକ ଡକ୍ଟର ରାଧାନାଥ ରଥଙ୍କ ପୌରୋହିତ୍ୟରେ ପ୍ରତିଷ୍ଠିତ ହେଲା । ସେହି ଦିନୁ ଅନୁଷ୍ଠାନଟି ପ୍ରଗତି ପଥରେ ଆଗେଇ ଚାଲିଛି ଏବଂ ଏହାର କଳେବର ଯଥେଷ୍ଟ ବୃଦ୍ଧି ପାଇଛି । ଆହୁରି ବୃଦ୍ଧି ପାଇବାର ଆଶା ମଧ୍ୟ ସଞ୍ଚାରିତ ହୋଇଛି । ଏ ମଧ୍ୟରେ ଅନୁଷ୍ଠାନର ସ୍ଥାୟୀ ଗୃହ ନିର୍ମାଣ ପାଇଁ ଆଚାର୍ଯ୍ୟ ମହାଶୟଙ୍କ ଜନ୍ମସ୍ଥାନ 'ଶ୍ରୀରାମଚନ୍ଦ୍ରପୁର' ଶାସନ 'ମହାଜନାନ୍‌କୋଠ' ଏକ ଏକର ଚଉଷଠୀ ଡେସିମିଲ୍‌ ଭୂମିଦାନ କରି ଧନ୍ୟବାଦାର୍ହ ହୋଇଛନ୍ତି ।

ଯେଉଁ ବନ୍ଧୁମାନେ ଆରମ୍ଭରେ ଉତ୍ସାହ ଦେଇଥିଲେ ସେମାନଙ୍କ ମଧ୍ୟରୁ ଶ୍ରୀ ରାଧାଶ୍ୟାମ ଦାସ, ଶ୍ରୀ ପ୍ରଭାକର ମିଶ୍ର, ଶ୍ରୀ ବୀରେନ୍ଦ୍ର କୁମାର ଦାସ, ଶ୍ରୀ ବସନ୍ତ କୁମାର କାନୁନ୍‌ଗୋ (ତତ୍କାଳୀନ ସତ୍ୟବାଦୀ ବି:ଡ଼ି:ଓ:), ଶ୍ରୀ ଭଗବାନ ସାହୁ ( ସତ୍ୟବାଦୀ ସବ୍‌ରେଜିଷ୍ଟ୍ରାର ), ଶ୍ରୀ ଗୋବିନ୍ଦ ଚନ୍ଦ୍ର ପଣ୍ଡା ଓ ଶ୍ରୀ ହୃଷିକେଶ ଶ୍ରେଷ୍ଠରାୟ ଅଦ୍ୟାବଧି ସେମାନଙ୍କର ଉତ୍ସାହ ଓ ସହଯୋଗ ଅତୁଟ ରଖିଛନ୍ତି । ସତ୍ୟବାଦୀ ସ୍କୁଲର ଶିକ୍ଷକ ଓ ଛାତ୍ରମାନଙ୍କ ଆନ୍ତରିକତା ଯୋଗୁ ହିଁ ଏହି ଅନୁଷ୍ଠାନ ସମ୍ଭବ ହୋଇଛି । ଆଖପାଖ ବିଦ୍ୟାଳୟଗୁଡ଼ିକର ଶିକ୍ଷକମାନଙ୍କ ସହଯୋଗ ମଧ୍ୟ ଉଲ୍ଲେଖନୀୟ ।

ଏପର୍ଯ୍ୟନ୍ତ ଅନୁଷ୍ଠାନଟି କୌଣସି ସରକାରୀ ଅନୁଦାନ ପାଇ ନ ଥିଲେ ମଧ୍ୟ ସତ୍ୟବାଦୀ ଅଞ୍ଚଳସ୍ଥ ଏବଂ ସତ୍ୟବାଦୀ ବାହାରେ ଓଡ଼ିଶାର ବହୁ ଅଞ୍ଚଳରୁ ଆଚାର୍ଯ୍ୟପ୍ରେମୀ ବହୁ ବନ୍ଧୁଙ୍କ ସଦିଚ୍ଛାରେ ମାସିକ ହାରାହାରି ଟ ୧୫୦୦·୦୦ ବ୍ୟୟ ବହନ କରି ଆଗେଇ ଚାଲିଛି ।

ପଣ୍ଡିତ ନୀଳକଣ୍ଠଙ୍କ ପରି ଆଚାର୍ଯ୍ୟ ହରିହର ସାହିତ୍ୟିକ ନ ଥିଲେ । ସେ ଥିଲେ ସେବା ଓ ତ୍ୟାଗର ମୂର୍ତ୍ତିମନ୍ତ ଅବତାର । ତାଙ୍କ ବିଷୟରେ ମଧ୍ୟ ଓଡ଼ିଶାର ପାଠାଗାରରେ ବିଶ୍ୱାସଯୋଗ୍ୟ ପୁସ୍ତକର ଅଭାବ ଅନୁଭବ କରାଯାଏ । ତାଙ୍କୁ କାଳବକ୍ଷରେ ଅବିସ୍ମରଣୀୟ କରି ତୋଳି ଧରିବା ପାଇଁ ତାଙ୍କ ବିଷୟରେ ଏବଂ ତାଙ୍କ ଜୀବନ ଉପରେ କେତେକ ପୁସ୍ତକ ରଚନା କରିବାର ପରିକଳ୍ପନା 'ଶିଶୁଭବନ' କରିଛି । ଏହି ପରିକଳ୍ପନାର ପ୍ରଥମ ପଦକ୍ଷେପ ଏହି ପୁସ୍ତକର ଆତ୍ମପ୍ରକାଶ । ବିଶ୍ୱାସଯୋଗ୍ୟ ଘଟଣାବଳୀର ସମାବେଶ ପାଇଁ ଆଚାର୍ଯ୍ୟଙ୍କର ପ୍ରତ୍ୟକ୍ଷ ସମ୍ପର୍କରେ ଥିବା ବନବିଦ୍ୟାଳୟର ପ୍ରାକ୍ତନ ଛାତ୍ର, ଆଚାର୍ଯ୍ୟଙ୍କର ପ୍ରତିବେଶୀ ଏବଂ ଆଚାର୍ଯ୍ୟଙ୍କର ଭାଷାରେ ଜୀବନ ନିୟନ୍ତ୍ରଣ କରିଥିବା ଓଡ଼ିଶାର ଲବ୍ଧ-ପ୍ରତିଷ୍ଠ ସାହିତ୍ୟିକ ଅବସରପ୍ରାପ୍ତ ଅଧ୍ୟାପକ ଶ୍ରୀଯୁକ୍ତ ଚିନ୍ତାମଣି ଦାଶ 'ଭବନ'ର ଅନୁରୋଧ ରକ୍ଷାକରି ଏହି ପୁସ୍ତକ ରଚନା କରିଛନ୍ତି । ସେତିକି ନୁହେଁ, ଏହି ପୁସ୍ତକର ବିକ୍ରୀଲବ୍ଧ ଲଭାଂଶ ତାଙ୍କ ଗୁରୁଙ୍କର ସ୍ମରଣ ପାଇଁ ପ୍ରତିଷ୍ଠିତ 'ଆଚାର୍ଯ୍ୟ ହରିହର ଶିଶୁଭବନ'ର ଉନ୍ନତିକଳ୍ପେ

ବ୍ୟସ୍ଥିତ ହେବାକୁ ଲଖିତ ସ୍ୱୀକୃତ ଦେଇ କୃତଜ୍ଞତାର ପାତ୍ର ହୋଇଛନ୍ତି । ଏହି ପୁସ୍ତକର ବିଷୟବସ୍ତୁ ଉପରେ ଅଧିକ କହିବା ଧୃଷ୍ଟତା ମନେକରେ । ପୁସ୍ତକଟି ତାର ନିଜର ପରିଚୟ । ପୁସ୍ତକଟି ଆତ୍ମପ୍ରକାଶ କରିବାରେ ଯେଉଁମାନେ ସାହାଯ୍ୟ କରିଛନ୍ତି, ସେମାନେ ହେଲେ ଶ୍ରୀ ନିତ୍ୟାନନ୍ଦ ଦାଶ (ବ୍ରହ୍ମପୁର ପୁସ୍ତକ ଭଣ୍ଡାରର ମାଲିକ), ମୋର ସହପାଠୀ ବନ୍ଧୁ ଲେଖକ ଶ୍ରୀ ପରମେଶ୍ୱର ରଥ, ଶ୍ରୀ ବିପ୍ରଚରଣ ଦାଶ ( କ୍ୟାପିଟାଲ୍ ଷ୍ଟୁଡେଣ୍ଟସ୍ ଷ୍ଟୋର ), ଶ୍ରୀ ନରସିଂହ ପାଲ (କଟକ ପୁସ୍ତକ ଭଣ୍ଡାରର ପୁସ୍ତକବିକ୍ରେତା ), ଶ୍ରୀ ଜାନକୀନାଥ ହାଲଦାର ( କଟକ ପାୟୋନିଅର ପ୍ରେସ ମାଲିକ ), ଶ୍ରୀ ବ୍ରଜସୁନ୍ଦର ମହାପାତ୍ର ( ଓଡ଼ିଶା ଗଭର୍ଣ୍ଣମେଣ୍ଟ ପ୍ରେସର ଡେପୁଟି ଡିରେକ୍ଟର ) ଓ ଝାରସୁଗୁଡ଼ା ହାଇସ୍କୁଲର ପ୍ରଧାନ ଶିକ୍ଷକ ଶ୍ରୀ ଉପେନ୍ଦ୍ର କୁମାର ସେନାପତି । ଏମାନଙ୍କ ପାଖରେ ବିନମ୍ର କୃତଜ୍ଞତା ଜଣାଉଛି । ପୁସ୍ତକ ପ୍ରକାଶ ପାଇଁ ସରକାରଙ୍କଠାରୁ ରିହାତି ମୂଲ୍ୟରେ କାଗଜ ମିଳିଛି । ଏଥିପାଇଁ ଦାୟିତ୍ୱରେ ଥିବା ତତ୍କାଳୀନ ଡେପୁଟି ସେକ୍ରେଟାରୀ ଓ ବର୍ତ୍ତମାନର ଓଡ଼ିଶାର ଉଚ୍ଚଶିକ୍ଷା ନିର୍ଦ୍ଦେଶକ ଡକ୍ଟର ଶ୍ରୀନିବାସ ସାହୁ ଆଇ. ଏ. ଏସ୍. ଙ୍କ ନିକଟରେ କୃତଜ୍ଞତା ଜଣାଉଛି ।

ପୁସ୍ତକ ପ୍ରକାଶ କରିବାର ଅଭିଜ୍ଞତା ନାହିଁ । ପ୍ରକାଶନରେ ବହୁ ତ୍ରୁଟି ରହିଯାଇଥିବ । ତଥାପି ସୁଧୀ ପାଠକବୃନ୍ଦ ଅନାଥ ଓ ନିରାଶ୍ରୟ ଶିଶୁମାନଙ୍କ କଲ୍ୟାଣ ପାଇଁ ଉଦ୍ଦିଷ୍ଟ ପୁସ୍ତକଟିକୁ ସାଦରେ ଗ୍ରହଣ କରିବେ ଓ ଆଗ୍ରହୀ ମହାଶୟଙ୍କ ସମ୍ପର୍କରେ ଆଉ କେତେଖଣ୍ଡି ପୁସ୍ତକ ଓଡ଼ିଶାର ପାଠାଗାରକୁ ଯୋଗାଇଦେବା ପାଇଁ ଉତ୍ସାହ ଦେବେ ବୋଲି ଅନୁରୋଧ ଜଣାଉଛି । ଇତି ।

ଶ୍ରୀ ବାମନ ଦାଶ
ବିମିତ ସଂପାଦକ
ଆଚାର୍ଯ୍ୟ ହରିହର
ଶିଶୁ ଭବନ
ଓ
ସମ୍ପାଦକ

# ସୂଚିପତ୍ର



* * *

# ଭଲ ମଣିଷ ହୁଅ

( ଆଚାର୍ଯ୍ୟ ହରିହର )

—୧—

## ଉପକ୍ରମ

ଶ୍ରୀରାମଚନ୍ଦ୍ରପୁର — ଗୋଟିଏ ବଡ଼ ବ୍ରାହ୍ମଣ ଶାସନ । ଏହି ଗ୍ରାମର ପ୍ରତିଷ୍ଠାତା ହେଉଛନ୍ତି ବାଦଶାହ ମୋଗଲସମ୍ରାଟ ଆକବରଙ୍କର ସମସାମୟିକ ଓଡ଼ିଶାର ଭୋଇବଂଶର ରାଜା ଶ୍ରୀ ରାମଚନ୍ଦ୍ରଦେବ । ମାଦଳା ପାଞ୍ଜିରେ (୩ୟ) ଉଲ୍ଲେଖ ଅଛି :—

"ଏମନ୍ତ ଭୋଇବଂଶର ବୀରବେହେରାଙ୍କ ପୁଅ ରମାଇ ରାଉତରାଙ୍କୁ ସମସ୍ତେ ବରିକରି ରାମଚନ୍ଦ୍ରଦେବ ବୋଲି ରାଜା କରିଥିଲେ × × × ଏ ରାଜା ଶ୍ରୀରାମଚନ୍ଦ୍ରପୁର ଶାସନ କଲେ । ବୀର ରାମଚନ୍ଦ୍ରପୁର ଶାସନ କଲେ । ଉଭୟମୁଖୀ ରାମଚନ୍ଦ୍ରପୁର ଶାସନ କଲେ ।" ଏହି ଗ୍ରାମ ପ୍ରାୟ ୧୫୫୩ ଖ୍ରୀଷ୍ଟାବ୍ଦରେ ସ୍ଥାପିତ ହୋଇଥିଲା ବୋଲି କୌଣସି କୌଣସି ଐତିହାସିକ କହନ୍ତି ।

ଏହି ଗ୍ରାମର ପ୍ରାଚୀନ ଓ ନବୀନ ଯୁଗର ଇତିହାସ ଅତି ସଂକ୍ଷିପ୍ତ ଭାବରେ ଏଠାରେ ଉଲ୍ଲେଖ କରିବା ଆବଶ୍ୟକ । ଖ୍ରୀଷ୍ଟ ଷୋଡ଼ଶ ଶତାବ୍ଦୀରେ ଏହି ଗ୍ରାମର ଅବସ୍ଥା କିପରି ଥିଲା ଏବଂ ବିଂଶ ଶତାବ୍ଦୀରେ ଏହାର ସଭ୍ୟତା ଓ ସଂସ୍କୃତି କିପରି ଅଛି, ସେଥିପ୍ରତି ଦୃଷ୍ଟିପାତ କରିବାକୁ ହେବ । ସେତେବେଳେ ଏହି ଗ୍ରାମର ପୁଷ୍କରିଣୀ, ଦେବମନ୍ଦିର ଓ ଗ୍ରାମର

ଚତୁଃସୀମା ଯେପରି ଭାବରେ ଥିଲା,ବର୍ତ୍ତମାନ କାଳସ୍ରୋତର ଗତିରେ ଅବଶ୍ୟ ସେପରି ନାହିଁ । ଦେବଦେବୀ ମନ୍ଦିର ଜରାଜୀର୍ଣ୍ଣ ହୋଇଯାଇଛି । କେତେ ବାଗ୍ମୀ, ପଣ୍ଡିତ, କବି ଏବଂ ସନ୍ଥସାଧୁ ପୁରୁଷ ଏହିଠାରେ ଜନ୍ମଗ୍ରହଣ କରି ନିଜ ନିଜ ପ୍ରତିଭାର ଆଲୋକ ବିକିରଣ କରିଯାଇଅଛନ୍ତି ତାହା ଇତିହାସ ଲିପିବଦ୍ଧ କରିନାହିଁ । କିନ୍ତୁ ଏହି ମନୀଷୀମାନଙ୍କ ମଧ୍ୟରେ ପୁରୀ ସଂସ୍କୃତ ବିଦ୍ୟାଳୟର ପ୍ରତିଷ୍ଠାତା ଶ୍ରୀ ହରିହର ଦାଶ ଅନ୍ୟତମ । ସେ କିପରି ନିବ୍ୟଧରଣର ବିଦ୍ୱାନ୍ ବ୍ୟକ୍ତି ଥିଲେ ତାହା ପରେ ଉଲ୍ଲେଖ କରାଯିବ । କାରଣ ଆଚାର୍ଯ୍ୟ ହରିହର ଦାସ ସେହି ପ୍ରାଚ୍ୟ ଓ ପାଶ୍ଚାତ୍ୟ ବିଦ୍ୟାର ଅଧିକାରୀ ହରିହର ଦାଶଙ୍କର କୁଳରେ ଜାତ । ତାଙ୍କ ଦେହର ରକ୍ତଧାରା ଆଚାର୍ଯ୍ୟଙ୍କ ପ୍ରତ୍ୟେକ ଶିରାପ୍ରଶିରାରେ ପ୍ରବାହିତ, ଅର୍ଥାତ୍ ଆଚାର୍ଯ୍ୟ ମହାଶୟ ସେହି ହରିହରଙ୍କର ଜ୍ଞାତି ଭାଇ । ଏହି କୌଶିକ ଗୋତ୍ରର ମୁଦ୍ରିତ ବଂଶଲତାରୁ ଜଣାଯାଏ, ଆଧୁନିକ ଯୁଗର ପ୍ରଥମ ଓ ପ୍ରକୃଷ୍ଟ ସମାଜ-ସଂସ୍କାରକ ନୀଳକଣ୍ଠ ଦାସଙ୍କର ଜନ୍ମ ଏହି କୌଶିକବଂଶରେ । ସତ୍ୟବାଦୀ ବନବିଦ୍ୟାଳୟର ଉତ୍ପତ୍ତି ଏହି ଗ୍ରାମରୁ । ଏହି ଗ୍ରାମର ମଧ୍ୟ ଭର୍ତ୍ତାକୁଳର ବିଦ୍ୟାଳୟକୁ ସତ୍ୟବାଦୀ ହାଇସ୍କୁଲରେ ପରିଣତ କରିବାର ଚେଷ୍ଟା ଆଚାର୍ଯ୍ୟଙ୍କର ଜ୍ଞାତି ଭାଇ ଗୋପୀ ଭାଇନାଙ୍କର । ଏହି ଗୋପୀ ଭାଇନା ଶ୍ରୀରାମଚନ୍ଦ୍ରପୁରନିବାସୀ । ଏହାଙ୍କର ନମ୍ରତା, ସାଧୁତା, ଧର୍ମନିଷ୍ଠା ପ୍ରଭୃତି ସଦ୍‌ଗୁଣରେ ଆଚାର୍ଯ୍ୟ ହରିହର ଅତି ଶୈଶବରୁ ଅନୁପ୍ରାଣିତ ହୋଇଥିଲେ ।

ଥରେ ଗ୍ରୀଷ୍ମ ଛୁଟିରେ ରେଭେନ୍‌ସା କଲେଜର ଛାତ୍ର ଗୋପବନ୍ଧୁ ଦାସ ଗାଆଁକୁ ଗାଆଁ ବୁଲି ଯୁବକସଂଘ ଗଢ଼ୁଥାନ୍ତି । ସେତେବେଳେ ତାଙ୍କର ଦାଢ଼ି ନ ଥାଏ । ତାଙ୍କର ମୁଖମଣ୍ଡଳରୁ ତେଜ ଫୁଟି ବାହାରୁ-ଥାଏ । ତାଙ୍କର କଣ୍ଠ ମଧୁର ହେଲେ ମଧ୍ୟ ପ୍ରତି ଶବ୍ଦରେ ଓଜ ପ୍ରକଟିତ ହେଉଥାଏ । ସେଦିନ ସେ ଆସି ବସିଥାନ୍ତି ଆଚାର୍ଯ୍ୟ ହରିହରଙ୍କ ପିତା ଶ୍ରୀ ମହାଦେବ ବ୍ରହ୍ମାଙ୍କ ପିଣ୍ଡାରେ । ତାଙ୍କ ସଙ୍ଗରେ ହରିହର ମଧ୍ୟ ଥାଆନ୍ତି । ସେହି ସମୟରେ ଖଇରବୋଲ ଗ୍ରାମର ଦଳେ ସ୍କୁଲ ଛାତ୍ର ସେହି ବାଟ ଦେଇ ଦୋଳବେଦୀ ଆଡ଼କୁ ଯାଉଥାନ୍ତି । ଗୋପବନ୍ଧୁ ଏହି

ପିଲମାନଙ୍କୁ ଦେଖି ସେମାନଙ୍କୁ ତାଙ୍କ ପାଖକୁ ଡାକି କହିଲେ, "ତୁମେ ସବୁ କୁଆଡ଼େ ଯାଉଛ ? ତୁମ ମୁହଁସବୁ ଏପରି Sun-burnt ଅର୍ଥାତ୍ ସୂର୍ଯ୍ୟତାପରେ ଜଳିଗଲା ପରି କାହିଁକି ଦେଖି ଯାଉଛି ? ପିଲମାନେ ଗୋପବନ୍ଧୁଙ୍କୁ ପୂର୍ବରୁ ଦେଖି ନ ଥିଲେ । କିନ୍ତୁ ଏହି ଦିନୁ ଗୋପବନ୍ଧୁଙ୍କର ପ୍ରଭାବ ଛାତ୍ରସମାଜ ଉପରେ ପଡ଼ିଥିଲା । କବିବର ରାଧାନାଥଙ୍କୁ ସେ ପୁରୀ ଜିଲ୍ଲା ସ୍କୁଲରେ ପଢ଼ିଲାବେଳେ ସମାଲୋଚନା କରିଥିଲେ । ଏ ସମ୍ବାଦ ସର୍ବତ୍ର ପ୍ରଚାରିତ ହୋଇଯାଇଥିଲା । ଯାହାହେଉ, ଏହି ଶ୍ରୀରାମ-ଚନ୍ଦ୍ରପୁରରେ ଛାତ୍ରମାନଙ୍କର ଗୋପବନ୍ଧୁଙ୍କ ସହିତ ପରିଚୟ ଘଟିଲା । ସମସ୍ତେ ମିଳିମିଶି ହରିହର ଦାଶଙ୍କ ମୃତ୍ୟୁ ତିରିଷା ନିମନ୍ତେ ପ୍ରତିବର୍ଷ କୁମାର ପୂର୍ଣ୍ଣିମା ଦିନ ତାଙ୍କ ଶ୍ରାଦ୍ଧ ଉପଲକ୍ଷେ ଗୋଟିଏ ବଡ଼ ସଭା କରିବାକୁ ସ୍ଥିର କଲେ ।

ଆଚାର୍ଯ୍ୟ ହରିହରଙ୍କର ପୂର୍ବବଂଶୀୟ ଜଣେ ପଣ୍ଡିତଙ୍କର କଥା ଏଠାରେ କୁହାଯାଉ । ପ୍ରାୟ ଶହେ ବର୍ଷ ତଳର କଥା । ପୁରୀରେ ଶ୍ରୀ ଜଗନ୍ନାଥଙ୍କର ନବ କଳେବର ହେବାର କଥା । ଯଜ୍ଞବେଦୀ ତିଆରି କରାଗଲା । ହରିହରଙ୍କର ପିତାମହ ଶ୍ରୀ ଜଗନ୍ନାଥ ଦାଶ ଏହି ଯଜ୍ଞ-ବେଦୀ ଦେଖି ବିସ୍ମିତ ହେଲେ ଏବଂ କ୍ରୋଧରେ ଜର୍ଜରିତ ହୋଇ ପୁରୀ ରାଜାଙ୍କୁ ଏହି କଥା ଜଣାଇଲେ । ରାଜା ଦେଖିଲେ, ପଣ୍ଡିତମାନେ ଶ୍ରୀ ଜଗନ୍ନାଥ ଦାଶଙ୍କର ଏ କଥା ଶୁଣି ତାଙ୍କ ପ୍ରତି ଈର୍ଷା ପୋଷଣ କରି ତାଙ୍କର ଅନିଷ୍ଟ କରିପାରନ୍ତି । ପ୍ରକୃତ ପଣ୍ଡିତମାନେ ତାଙ୍କର ଅଗାଧ ପାଣ୍ଡିତ୍ୟ ଦେଖି ତାଙ୍କୁ ସେହି ବର୍ଷ ନବକଳେବରକୁ ନିମନ୍ତ୍ରଣ କରି ନ ଥିଲେ । କିନ୍ତୁ ପୁରୀ ରାଜା ଶ୍ରୀ ଜଗନ୍ନାଥ ଦାଶଙ୍କୁ ଭଲ କରି ଜାଣନ୍ତି । ତେଣୁ ସେ ଗୋଟିଏ କୌଶଳ କଲେ । ସେ ଜଗନ୍ନାଥ ଦାଶଙ୍କୁ କହିଲେ, "ତୁମେ କାଲି ଜଗନ୍ନାଥ ମନ୍ଦିର ଭିତରେ ତୁମର ପୋଥିପତ୍ର ନେଇ ଲୁଚି କରି ବସିଥିବ ।" ସତକୁ ସତ ତହିଁ ପରଦିନ ରାଜା ଯାଇ ମନ୍ଦିର ଭିତରେ ପ୍ରବେଶ କଲେ । ଯଜ୍ଞବେଦୀ ପାଖରେ ଠିଆହୋଇ ରାଜା ବଡ଼ ପାଟି କରି କହିଲେ, "ଦେଖନ୍ତୁ, ଦିଅଁଙ୍କର ନବକଳେବର ନିକଟ ହୋଇ ଆସିଲା । ଏହି ଯଜ୍ଞବେଦୀ ପ୍ରଭୃତିରେ କୌଣସି ତ୍ରୁଟି ରହିଯାଇ ନାହିଁ

ତ ?" ଏ କଥା ଶୁଣି ଲୁଚବା ସ୍ଥାନରୁ ଉଠି ଠିଆହୋଇ ଜଗନ୍ନାଥ ଦାଶ କହିଲେ, "ମଣିମା, ଏଥିରେ ସାମାନ୍ୟ ଦୋଷ ରହିଯାଇଛି ।" ଏ କଥା ଶୁଣି ରାଜାଙ୍କ ପଣ୍ଡିତମାନେ ବିରକ୍ତ ହୋଇଉଠିଲେ । ରାଜା ବାଧାଦେଇ କହିଲେ, "ଆପଣମାନେ ଧୈର୍ଯ୍ୟ ଧରି ନୀରବ ରହନ୍ତୁ ଏବଂ ସେ କ'ଣ କହୁଛନ୍ତି ଶୁଣନ୍ତୁ ।" କିନ୍ତୁ ଜଗନ୍ନାଥ ଦାଶ କାଖ ତଳୁ ତାଳପତ୍ର ପୋଥି ବାହାର କରି ସଙ୍କେତରେ କେଉଁଠି ତ୍ରୁଟି ଅଛି ତାହା ବିମୋତ ଭାବରେ ପଣ୍ଡିତମାନଙ୍କୁ ଦେଖାଇଦେଲେ । ପଣ୍ଡିତମାନେ ତାଙ୍କ କଥାରେ ସନ୍ତୋଷ ପ୍ରକାଶ କଲେ । ଦାଶଙ୍କୁ ଯଜ୍ଞର ପୁସ୍ତକାଚାର୍ଯ୍ୟ ରୂପେ ବରଣ କରାଗଲା । ନବକଳେବର ଶେଷ ହେବାରୁ ରାଜା ଜଗନ୍ନାଥ ଦାଶଙ୍କୁ ଗୋଟିଏ ଉପାଧି ଦେବାକୁ କହିଲେ । ଦାଶେ କହିଲେ, "ଉପାଧି ବ୍ୟାଧି-ରେବ ଚ ।" ମୁଁ ତ ଆସି ବୁଢ଼ା ହେଲିଣି, ଏ ଉପାଧି ଆଉ କେତେ କାଳ ଭୋଗ କରିବ ? ମୋର ଦୁଇଟି ପୁଅ ଅଛନ୍ତି । ରାଜା ଜଗନ୍ନାଥଙ୍କ କଥାରେ ସନ୍ତୁଷ୍ଟ ହୋଇ ବଡ଼ ପୁଅ ମହାଦେବଙ୍କୁ "ବ୍ରହ୍ମା" ଉପାଧି ଦେଲେ ଏବଂ ସାନ ପୁଅ ବନମାଳୀକୁ "ଷଡ଼ଙ୍ଗୀ" ଉପାଧି ଦେଲେ । ଏହି "ଷଡ଼ଙ୍ଗୀ" ଶବ୍ଦ ଲୋକମୁଖରେ 'ଷାଡ଼ଙ୍ଗୀ'ରେ ପରିଣତ ହେଲା । ହରିହରଙ୍କ ପିତା ମହାଦେବ ବ୍ରହ୍ମା ଅନେକ ଦିନ ରାଘୁନାଥପୁର ଓ ନିଜ ଗ୍ରାମ ଶ୍ରୀରାମଚନ୍ଦ୍ରପୁର ଭର୍ଣ୍ଣାକୁଲର ସ୍କୁଲରେ ଦକ୍ଷତାର ସହିତ ଶିକ୍ଷକତା କରିଥିଲେ । ଏହି ସମୟରେ ବ୍ରହ୍ମାଙ୍କର ଗୋଟିଏ ପୁଅ ଜାତ ହେଲା । ଏହା ୧୮୭୯ ମସିହାର କଥା । ଭାରତୀୟ ଜ୍ୟୋତିଷ ଶାସ୍ତ୍ର ଅନୁସାରେ ଏହି ଦିନଟି ୧୨୮୫ ସାଲ, ଫାଲ୍‌ଗୁନ କୃଷ୍ଣ ଦ୍ୱିତୀୟା ।

ଆଚାର୍ଯ୍ୟ ହରିହରଙ୍କର ପୁଣ୍ୟାତ୍ମାକୁ ବହନ କରି ଏହି ରାଜ-ପ୍ରତିଷ୍ଠିତ ଗ୍ରାମ ଧନ୍ୟ ଓ ସାର୍ଥକ ହୋଇଅଛି । ତାହାଁ ସଙ୍ଗେ ସଙ୍ଗେ ଶତ ସହସ୍ର ନିରକ୍ଷର ଓ ନିରନ୍ନ ମନୁଷ୍ୟକୁ ଧନ୍ୟ କରିଅଛି । ଉତ୍କଳମାତାର ଜଣେ ଯୋଗ୍ୟତମ ସନ୍ତାନ ରୂପେ ସେ ଯୁଗ ଯୁଗ ଧରି ବହୁ କାଳ ପର୍ଯ୍ୟନ୍ତ ଜଣେ ଆଦର୍ଶ ମନୁଷ୍ୟରୂପେ ପୂଜା ପାଉଥିବେ ।

ରାଜଦତ୍ତ ଉପାଧି 'ବ୍ରହ୍ମା' ଓ 'ଷଡ଼ଙ୍ଗୀ' ହରିହର କିନ୍ତୁ ଗ୍ରହଣ କଲେ ନାହିଁ । ଏ ସମ୍ପର୍କରେ ଆଚାର୍ଯ୍ୟଙ୍କର ସେବକ ଶ୍ରୀ ସଚ୍ଚିଦାନନ୍ଦ

ମହାତ୍ମା ଯାହା ଲେଖିଛନ୍ତି ତାହା ଏଠାରେ ଉଦ୍ଧାର କରାଯାଉ— "ମହାଦେବ ବ୍ରହ୍ମା ଭାବିଚନ୍ତି ପୁଅର ନାମ ରଖିଲେ ହରିହର । ସେ ଭାବିଥିଲେ, ହରିହର ତ ନିଶ୍ଚୟ ତା ନାମ ଶେଷରେ 'ବ୍ରହ୍ମା' ଲେଖିବ । ଅତଏବ ସେ ଏକାଧାରରେ ହେବ ହରିହର ବ୍ରହ୍ମା । କିନ୍ତୁ ହରିହର ତ ହେଲେ ନମ୍ରତାର ପ୍ରତୀକ । ସେ ରାଜଦତ୍ତ 'ବ୍ରହ୍ମା' ଉପାଧି ବ୍ୟବହାର କଲେ ନାହିଁ । ସେ ଜାଣି ନ ଥିଲେ ଯେ, ପଦବୀ ତାଙ୍କୁ ଛାଡ଼ିବ ନାହିଁ । ଶେଷରେ ହରିହର ଦାସ ତାଙ୍କର କର୍ତ୍ତବ୍ୟ କରୁ କରୁ ହେଲେ ଆଚାର୍ଯ୍ୟ ହରିହର ଦାସ । ସେହି ପଦବୀ ନାମର ଶେଷରେ ନ ରହି ନାମର ପ୍ରଥମରେ ବସା ବାନ୍ଧିଲା । ଅବଶେଷରେ ସେ ହେଲେ ସମସ୍ତଙ୍କର ପ୍ରିୟ 'ଆଚାର୍ଯ୍ୟ ମହାଶୟ' । କିନ୍ତୁ ତାଙ୍କ ବଂଶର କେହି କେହି କହନ୍ତି— ବନ୍ଦୋବସ୍ତରେ "ବ୍ରହ୍ମା" ଏହି ସଂଜ୍ଞା ଉଠିଗଲା ଏବଂ ହରିହର ବ୍ରହ୍ମା, ହରିହର ଦାସ ନାମରେ ପରିଣତ ହେଲେ । ଆଉ ଗୋଟିଏ କଥାରେ ମତଭେଦ ଦେଖାଯାଏ ଯେ, ହରିହରଙ୍କର ଜନ୍ମ ୨୭ । ୨ । ୧୮୭୮ ଫାଲ୍‌ଗୁନ ଦ୍ୱିତୀୟା । ହରିହରଙ୍କୁ ଯେତେବେଳେ ୪ କିମ୍ବା ୫ ବର୍ଷ ବୟସ, ସେତିକିବେଳେ ତାଙ୍କର ଜନନୀ ପରଲୋକ ଗମନ କଲେ । ମହାଦେବ ବ୍ରହ୍ମାଙ୍କୁ ସେତେବେଳେ ବୟସ ବେଶୀ ନୁହେଁ । ଘରେ ଚାଲେଣି ପଡ଼ିଗଲା ପିତା ତ ନଅଟାଠାରୁ ଚାରିଟା ପର୍ଯ୍ୟନ୍ତ ଭର୍ତ୍ତ୍ରୀକୁଲର ବିଦ୍ୟାଳୟରେ ଶିକ୍ଷକତା କରୁଥିଲେ, ଘରର ଯତ୍ନ ନେବ କିଏ ? ମାତାଙ୍କୁ ଶବବାହକମାନେ ଯେତେବେଳେ ଘରୁ ଉଠାଇନେଲେ, ସେତେବେଳେ ତାଙ୍କର ଆଖି ଦୁଇଟି ମାତ୍ର ବାଷ୍ପାକୁଳ ହୋଇଉଠିଲା ।

ନିକଟବର୍ତ୍ତୀ ବାଲିକୁଦରେ ଶବର ସଂସ୍କାର କରାଗଲା । କିନ୍ତୁ କିଏ ଜାଣିଥିଲା ଏହିଠାରେ ସ୍ତୂପୀକୃତ ବାଲୁକାରାଶିରେ ଯେଉଁ ଶବଟି ଭସ୍ମରେ ପରିଣତ ହେଲା, ସେହି ଜନନୀର ଗର୍ଭରେ ଭଗବାନ କି ଏକ ମହାନ୍ ଓ ଉଦାର ଶିଶୁଟିଏ ସୃଷ୍ଟି କରିଥିଲେ ?

ସେହି ଶିଶୁ ପୁଣି ବଡ଼ ହୋଇ ଭବିଷ୍ୟତରେ ଆଦର୍ଶ ଶିକ୍ଷକ, ସତ୍ୟବାଦୀ ବନ ବିଦ୍ୟାଳୟ ଛାତ୍ରାବାସର ସୁବିଖ୍ୟାତ ଆଚାର୍ଯ୍ୟ, ଅନାଥାଶ୍ରମ

ଓ ବିଧବାଶ୍ରମର ଦକ୍ଷ ପରିଚାଳକ, ସତ୍ୟାଗ୍ରହୀମାନଙ୍କର ସେନାପତି, ସାମ୍ରାଜ୍ୟଲିପ୍ସୁ ଇଂରେଜମାନଙ୍କ ବିରୁଦ୍ଧରେ ପ୍ରାଣମୂର୍ଚ୍ଛା ସଂଗ୍ରାମରତ, ଉତ୍କଳ କଂଗ୍ରେସ କମିଟିର ସଭାପତି ।

ହରିଜନ ସେବକ ସଂଘ ଓ ମୌଳିକ ଶିକ୍ଷା ପରିଷଦର ସଭାପତି, ସର୍ବୋଦୟ ଆନ୍ଦୋଳନର ସର୍ବଶ୍ରେଷ୍ଠ କର୍ମୀ ଭାବରେ ନିରାଡ଼ମ୍ବର ଜୀବନ ଯାପନ କରି ପୁଣ୍ୟାତ୍ମା ଗୋପବନ୍ଧୁଙ୍କ ସହିତ ଓଡ଼ିଶା ତଥା ଭାରତ ଭୂମିକୁ କୃତାର୍ଥ କରିବେ ? ଏଣେ ମହାଦେବ ବ୍ରହ୍ମା ଶୋକାବେଗରେ ଶଯ୍ୟାଶାୟୀ, କେହି ତାଙ୍କୁ କିଛି ସାନ୍ତ୍ୱନାବାଣୀ ଦେଲେ ତାହା ତାଙ୍କ ଦୁଃଖକାତର ପ୍ରାଣକୁ ସ୍ପର୍ଶ କରୁ ନାହିଁ । କେବଳ ଅଶ୍ରୁପ୍ରବାହରେ ସେ ଭାସମାନ । ଏକମାତ୍ର ଚିନ୍ତା ହରିକି ମୋର ମଣିଷ କରିବ କିଏ ? ହରି କ'ଣ ମା'ମଲା ପିଲା ହୋଇ ରହିବ ? ଏଥି ପୂର୍ବରୁ ବ୍ରହ୍ମାଙ୍କର ଗୋଟିଏ କନ୍ୟା ଜାତ ହୋଇଥିଲା । ତାର ନାମ 'ମୁକ୍ତା' । ସେ ବୀରପ୍ରତାପ-ପୁରରେ ବିବାହ କରିଥିଲେ । ତାଙ୍କର ପୁଅ ଶ୍ରୀ ନାରାୟଣ ମିଶ୍ର, ଯେ କି ସମବାୟ ବିଭାଗରେ ଜଣେ ଉଚ୍ଚପଦସ୍ଥ କର୍ମଚାରୀ ଥିଲେ ଏବଂ ଯାହାଙ୍କୁ ବର୍ତ୍ତମାନ ପ୍ରାୟ ୮୫ ବର୍ଷ ବୟସ ହେବ, ସେ ବିଶେଷତଃ ଦରିଦ୍ର ନାରାୟଣଙ୍କର ଏକନିଷ୍ଠ ସେବକ, ଗୋପବନ୍ଧୁଙ୍କର ଜାମାତା । ସେ ବର୍ତ୍ତମାନ ସୁଦ୍ଧା ଜୀବିତ ଅଛନ୍ତି ।

ତାଙ୍କର ପୁତ୍ର ଶ୍ରୀ ସତ୍ୟବାଦୀ ମିଶ୍ର ଜଣେ ବିଶିଷ୍ଟ ଦାର୍ଶନିକ । ସେ ବର୍ତ୍ତମାନ ମୟୂରଭଞ୍ଜ ବାରିପଦା କଲେଜର ଅଧ୍ୟକ୍ଷ ।

କେତେ ଦିନ ଏହିପରି ବ୍ରହ୍ମାଙ୍କର ଦୁଃଖରେ ବିତିଗଲା । ମନ ସ୍ଥିର ହେବାରୁ ଦ୍ୱିତୀୟ ବିବାହ ପାଇଁ କନ୍ୟା ଖୋଜା ଚାଲିଲା । ଏ ସମ୍ପର୍କରେ ଅନୁସନ୍ଧିତ୍ସୁ ଶ୍ରୀ ନରହରି ସ୍ୱାଇଁ, ସମ୍ପାଦକ-ଉତ୍କଳ ସର୍ବୋଦୟ ମଣ୍ଡଳ, କଟକ ତାଙ୍କର 'ନରଜନ୍ମା ହରିହର' ପ୍ରବନ୍ଧରେ ଉଲ୍ଲେଖ କରିଅଛନ୍ତି, "ଏହି ମାନବଦେହୀ ମହାପୁରୁଷଙ୍କର ଜନ୍ମ ପୁରୀ ଜିଲ୍ଲାର ଶ୍ରୀରାମଚନ୍ଦ୍ରପୁର ଗ୍ରାମରେ । ତାଙ୍କର ପିତାଙ୍କ ନାମ ମହାଦେବ ବ୍ରହ୍ମା ଓ ମାତାଙ୍କ ନାମ ଶ୍ରଦ୍ଧା ଦେବୀ । ପିତାମାତାଙ୍କର ଜ୍ୟେଷ୍ଠ ପୁତ୍ର ହିସାବରେ ଅତି ଅଳିଅଳରେ

ହରି ବଢ଼ିଥିଲେ । ତାଙ୍କୁ ତିନି ବର୍ଷ ହେଲାବେଳେ ମାତା ଶ୍ରଦ୍ଧା ଦେବୀଙ୍କର ମୃତ୍ୟୁ ହେତୁ ପିତା ମହାଦେବ ବ୍ରହ୍ମାଙ୍କୁ ହରିର ସକଳ ଦାୟିତ୍ୱ ବହନ କରିବାକୁ ପଡ଼ିଲା । ପିଲାଟି ଦିନରୁ ସେ ଥିଲେ ଏକ ନମ୍ରତାର ମୂର୍ତ୍ତିମନ୍ତ ପ୍ରତୀକ । ତୁଳସୀ ଦୁଇ ପତ୍ରରୁ ବାସିଲା ପରି ପିଲାଟି ଦିନୁ ତାଙ୍କର କାର୍ଯ୍ୟ-କଳାପରୁ ସେ ଜଣେ ମହତ୍ ପୁରୁଷ ହେବେ ତାହା ସ୍ପଷ୍ଟ ଜଣାପଡ଼ୁଥିଲା ।”

ପିଲାଟି ଦିନରୁ ହରିହରଙ୍କର ସମାଜସଂସ୍କାର ମନୋବୃତ୍ତି ବଡ଼ ପ୍ରବଳ ଥିଲା । ଅଳ୍ପ ବୟସର ଯୁବକ ହୋଇ ସେ ଗାଁରେ ପଢ଼ୁଥାନ୍ତି । ସେତିକି ବେଳୁ ସେ ଗାଁରେ ପ୍ରୌଢ଼ ଶିକ୍ଷା ଆନ୍ଦୋଳନର ସୂତ୍ରପାତ କରିଥିଲେ । ଆଜିକାଲି ପ୍ରୌଢ଼ ଶିକ୍ଷା ଉପରେ ଆମର ଜାତୀୟ ସରକାର ବିଶେଷ ଗୁରୁତ୍ୱ ଆରୋପ କରୁଛନ୍ତି । ଆମ ଗାଁରେ ଆଗ୍ରହୀ ହରିହର ଦାସଙ୍କ ସମୟରେ ନିରକ୍ଷର ପ୍ରୌଢ଼ ଏବଂ ବୃଦ୍ଧମାନଙ୍କୁ ଏକତ୍ର କରି ସେମାନଙ୍କୁ ସେ ଓଡ଼ିଆ ରାମାୟଣ ଓ ମହାଭାରତ ପ୍ରଭୃତି ଶୁଣାଉଥିଲେ । କିନ୍ତୁ ବର୍ତ୍ତମାନ ବୈଜ୍ଞାନିକ ଶିକ୍ଷା ଲାଭକରି ନିରକ୍ଷର ଲୋକେ କିପରି ଉପଯୋଗୀ ଗୃହକାମଠାରୁ ଆରମ୍ଭ କରି କ୍ଷୁଦ୍ର କୁଟୀରଶିଳ୍ପ ପର୍ଯ୍ୟନ୍ତ ରଚନା କରି ନିଜର ଭରଣପୋଷଣ କରିପାରିବେ ସେଥିପାଇଁ ସେମାନଙ୍କୁ କଲେଜ ଛାତ୍ର ଓ ଅନ୍ୟାନ୍ୟ ବେତନପ୍ରାପ୍ତ ସରକାରୀ କର୍ମଚାରୀମାନେ ଶିକ୍ଷା ଦେଉଅଛନ୍ତି । ଏଥିପ୍ରତି ଲୋକଙ୍କର ଆଗ୍ରହ କ୍ରମେ କ୍ରମେ ବଢ଼ୁଛି । ଏହା ଗୋପବନ୍ଧୁଙ୍କର ସାର୍ବଜନୀନ ଶିକ୍ଷା ସଂଘର ଗୋଟିଏ ଦୃଢ଼ ମତ ଥିଲା । ସେ ପ୍ରୌଢ଼ ଶିକ୍ଷାକୁ ତାଙ୍କ 'ସମାଜ', 'ସତ୍ୟବାଦୀ' ଓ ନାନା ଭାଷଣରେ ପ୍ରୋତ୍ସାହ ଦେଉଥିଲେ । ଜନଶିକ୍ଷାର ବହୁଳ ପ୍ରସାର ନିମନ୍ତେ ଏହି ଶିକ୍ଷା ଯେ ଉଦ୍ଦିଷ୍ଟ ଥିଲା, ଏଥିରେ ସନ୍ଦେହ ନାହିଁ । ସେ ୧୯୧୯ ମସିହାରେ ଅନୁଷ୍ଠିତ ହୋଇଥିବା କଟକର ଉତ୍କଳ ସମ୍ମିଳନୀର ସଭାପତି ରୂପେ ଯେଉଁ ଦୀର୍ଘ ଓ ସୁନ୍ଦର ଭାଷଣ ଦେଇଥିଲେ, ସେଥିରେ ଉଲ୍ଲେଖ କରିଥିଲେ— "ପଲ୍ଲୀର ଭାଗବତ ଘର ଆମ୍ଭମାନଙ୍କ ଜାତୀୟ ଶିକ୍ଷାର ଅନ୍ୟ ଏକ କ୍ଷେତ୍ର । ସରକାର ପ୍ରାଥମିକ ଶିକ୍ଷା ବଢ଼ାଉଥିଲେ ସୁଦ୍ଧା ଓଡ଼ିଶାରେ ଅକ୍ଷରଜ୍ଞ ଲୋକଙ୍କ ସଂଖ୍ୟା ଏବେ ମଧ୍ୟ ଯଥେଷ୍ଟ କମ୍ ଅବଶ୍ୟ ପୂର୍ବ ଜନଗଣନାରେ ଯାହା ଥିଲା ଗଲା Censusରେ ତହିଁରୁ

ଲୋକସଂଖ୍ୟା ଅନୁପାତରେ ଊଣା ହୋଇଅଛି । ଏହାର କାରଣ କ'ଣ ? ଇତି ପୂର୍ବେ ଗୃହ୍ଣାଙ୍କୀମାନଙ୍କରେ ଯେଉଁ ଶିକ୍ଷା ଦିଆଯାଉଥିଲା ଲୋକେ ସେଥିରେ ଖର ଅଭ୍ୟସ୍ତ ହେଉଥିଲେ । ଓଡ଼ିଆ ଜନସାଧାରଣଙ୍କର ଧର୍ମରେ ବିଶେଷ ଆସ୍ଥା ଥିଲା । ଓଡ଼ିଆ ଭାଗବତ ଓ ଅନ୍ୟାନ୍ୟ ପୁରାଣର ବହୁଳ ପ୍ରଚାର ଥିଲା । ପୁଅର ବର୍ଣ୍ଣ ପରିଚୟ କରାଇ ଭାଗବତ ପଢ଼ିବା ଲାଗି ତାକୁ ସମର୍ଥ କରାଇବା ପ୍ରତ୍ୟେକ ପିତା ଆପଣାର କର୍ତ୍ତବ୍ୟ ମଣୁଥିଲେ । ଏମନ୍ତ କି ଉପେକ୍ଷିତ, ଅସ୍ପୃଶ୍ୟ ବର୍ଣ୍ଣମାନେ କେବଳ ଏହି ଉଦ୍ଦେଶ୍ୟରେ ପିଲାଙ୍କୁ ପଢ଼ାଉଥିଲେ । ବାଉରୀ, କଣ୍ଡରା ସାହିରେ ଲୋକେ ତୁଳସୀ ଗଛମୂଳରେ ଭାଗବତ ବୋଲୁଥିଲେ । ବର୍ତ୍ତମାନ ସୁଦ୍ଧା ଏହା କ୍ୱଚିତ୍ ସ୍ଥାନେ ସ୍ଥାନେ ଦେଖାଯାଏ ।" ଏହା କେବଳ ଗୋପବନ୍ଧୁଙ୍କର ବ୍ୟକ୍ତିଗତ ମତ ନ ଥିଲା । ଏହା ହିଁ ଥିଲା ଉତ୍କଳ ସମ୍ମିଳନୀର ମୌଳିକ ଲକ୍ଷ୍ୟ । କାରଣ ଶିକ୍ଷା ବିନା ମନୁଷ୍ୟର ଜୈବିକ, ମାନସିକ ଓ ଶାରୀରିକ ବିକାଶ ଅସମ୍ଭବ । ଏଥିପାଇଁ ନିରକ୍ଷର ଗ୍ରାମବାସୀମାନଙ୍କ ପାଇଁ ସତ୍ୟବାଦୀ ସ୍କୁଲର ସୃଷ୍ଟି ହୋଇଥିଲା । ସେହି ସତ୍ୟବାଦୀ ସ୍କୁଲର ଆଦର୍ଶ ଶିକ୍ଷକ ଆଚାର୍ଯ୍ୟ ହରିହର ବୋଧହୁଏ ଭଗବାନଙ୍କର ଆଶୀର୍ବାଦ ଲାଭକରି ଭର୍ଣ୍ଣାକୁଲର ସ୍କୁଲରେ ପଢ଼ିବା ସମୟରେ ନିଜ ଗ୍ରାମର ନିରକ୍ଷରମାନଙ୍କୁ ସନ୍ଧ୍ୟାଠାରୁ ରାତି ନଅଟା ପର୍ଯ୍ୟନ୍ତ କୌଣସି ବେତନ ନ ନେଇ ପାଠ ପଢ଼ାଉଥିଲେ । ଏ ସମ୍ପର୍କରେ ଜନନନ୍ଦିତ ପ୍ରଣେତା ଭକ୍ତିଭାଜନ ଶ୍ରୀ ବିନୋଦ କାନୁନ୍‌ଗୋ "ସତ୍ୟର ପୂଜାରୀ" ପ୍ରବନ୍ଧରେ "ଆଚାର୍ଯ୍ୟ ହରିହର"ଙ୍କ ସମ୍ବନ୍ଧରେ ଗୋଟିଏ ଉପାଦେୟ ପ୍ରବନ୍ଧରେ ଲେଖିଅଛନ୍ତି—"ପିଲାଲୋକ କେଉଁଠି କ'ଣ କରୁଥିବ ଭାବି ବୋଉ (ମା) ଶ୍ରଦ୍ଧା ଦେବୀଙ୍କ ମନରେ ଥରେ ଥରେ ଆଶଙ୍କା ଉପୁଜେ । କିନ୍ତୁ ହରି ଏଭଳି ଗେହ୍ଲା ହୋଇଥାଏ ଯେ ସେ ତାକୁ କିଛି କହନ୍ତି ନାହିଁ । ଦିନେ ପଚାରିଲେ—"ଏତେ ଡେରି ଯାଏ କେଉଁଠି ରହୁଛୁ ?" ଏତେ ଲୋକଙ୍କୁ ପାଠ ପଢ଼ାଉଥିବା କଥା ଶୁଣି କହିପକାଇଲେ, "ଆରେ ପୁଅ, ମୋତେ ଟିକିଏ ଅକ୍ଷର ଶିଖାନ୍ତୁ ନାହିଁ ?"

ପକ୍ଷାନ୍ତରେ ଲେଖକ ଆଚାର୍ଯ୍ୟଙ୍କର ସାନ ଭାଇ ଗୋବିନ୍ଦ ଦାଶଙ୍କଠାରୁ ପଚାରି ବୁଝିଲେ, ହରିହରଙ୍କର ସାବତ 'ମା' ଉତ୍ତୁଙ୍ଗେଇ

ଦେବୀ, ଏବଂ ଶ୍ରଦ୍ଧା ଦେବୀ ହେଉଛନ୍ତି ତାଙ୍କର ନିଜ ମା। କାନୁନ୍‌ଗୋ ଲେଖିଛନ୍ତି, "ପିଲାଲୋକ ଏତେ ଡେରିରେ ଘରେ ପହଞ୍ଚୁଛି। ଏହି କଥା ମା ଶ୍ରଦ୍ଧା ଦେବୀଙ୍କ ମନରେ ନାନା ପ୍ରକାର ଆଶଙ୍କା ଉପୁଜାଉଥିଲା।" କିନ୍ତୁ ଏହା ପୂର୍ବରୁ ସେ ଲେଖିଛନ୍ତି, "ପିଲାଟିକୁ ଯେତେବେଳେ ୪।୫ ବର୍ଷ ବୟସ ସେତେବେଳେ ମା ମରିଗଲେ। ମହାଦେବ ବ୍ରହ୍ମା ଆଉ ଥରେ ବିବାହ କଲେ। ସାବତ ମା ଏଭଳି ଯତ୍ନରେ ପାଳିଲେ ଯେ ପିଲାଟି ଅନୁଭବ କଲା ସତେ ଯେପରି ମା ମରି ନାହିଁ।" ଯଦି ଶ୍ରଦ୍ଧା ଦେବୀ ତାଙ୍କର ମା ତାହାହେଲେ ହରିହରଙ୍କୁ ୪।୫ ବର୍ଷ ବୟସ ବେଳେ ସେ କପରି ସନ୍ଧ୍ୟାରେ ଯାଇ ନିରକ୍ଷରଙ୍କୁ ପଢ଼ାଉଥିଲେ ? ଶ୍ରଦ୍ଧା ଦେବୀ ତାଙ୍କର ନିଜ ମା ଓ ତୁଙ୍ଗେଇ ଦେବୀ ତାଙ୍କର ସାବତ ମା।

ତା'ପରେ ହରିଙ୍କର ପାଠପଢ଼ା ଆରମ୍ଭ ହୁଏ ଗୃହଶାଳୀରୁ ଆସି ମଧ୍ୟ ଭର୍ଣ୍ଣାକୁଲର ସ୍କୁଲରେ। ଏଠାରେ ୭ମ ଶ୍ରେଣୀ ପର୍ଯ୍ୟନ୍ତ ଇଂରାଜୀ ବ୍ୟତୀତ ପ୍ରାୟ ପ୍ରତ୍ୟେକ ବିଷୟ ପରୀକ୍ଷା ପାଇଁ ନିର୍ଦ୍ଦିଷ୍ଟ ଥିଲା। ଏହି ଭର୍ଣ୍ଣାକୁଲର ସ୍କୁଲ କେତେକ ପ୍ରତିଷ୍ଠିତ ବ୍ୟକ୍ତିଙ୍କଦ୍ୱାରା ଯଥା :— ଶ୍ରୀ ଗୋପୀନାଥ ଦାସ, B. A. ଡେପୁଟି ମାଜିଷ୍ଟ୍ରେଟ୍ ଏବଂ ହରିହରଙ୍କର ଗୋପୀ ଭାଇନାଙ୍କ ଉଦ୍ୟମରେ ଶ୍ରୀରାମଚନ୍ଦ୍ରପୁରରୁ ଉଠିଯାଇ ସତ୍ୟବାଦୀ ମଧ୍ୟ ଇଂରାଜୀ ବିଦ୍ୟାଳୟରେ ପରିଣତ ହେଲା। ସେତେବେଳେ ବିଂଶ ଶତାବ୍ଦୀର ଆରମ୍ଭ। ଇଂରାଜୀ ପାଠ ପଢ଼ିଲେ ଜାତି ଯିବ ବୋଲି ଲୋକଙ୍କର ଭୟ ଥାଏ। ଏହି ଭର୍ଣ୍ଣାକୁଲର ସ୍କୁଲ ବ୍ୟତୀତ ଆଉ ଗୋଟିଏ ସଂସ୍କୃତ ବିଦ୍ୟାଳୟ ମଧ୍ୟ ଥାଏ। ସେତେବେଳେ ପିଲାମାନେ ଟିକିଏ ବେଶୀ ବୟସରେ ପାଠ ପଢ଼ା ଆରମ୍ଭ କରୁଥିଲେ। ଆଚାର୍ଯ୍ୟ ହରିହର ଯେଉଁ ଡାଏରୀ ଲେଖିଛନ୍ତି, ସେଥିରେ ଉଲ୍ଲେଖ ଅଛି— "୧୮୯୩-୯୪ ସାଲର କଥା। ପାଶ୍ଚାତ୍ୟ ସଭ୍ୟତାର ଖରସ୍ରୋତ ଉତ୍କଳର ପୁରପଲ୍ଲୀକୁ ପ୍ଲାବିତ ନ କରି ପାରିଥିଲେ ସୁଦ୍ଧା ଆମ ଗାଁରେ କେତେକ ପରିମାଣରେ ପ୍ରବେଶ ଲାଭ କରିଥିଲା। ଇଂରାଜୀ ଶିକ୍ଷା ପ୍ରତି ଅଭିଭାବକମାନଙ୍କର ମନ ଆକୃଷ୍ଟ ହୋଇ ଆସୁଥିଲା। ଇଂରାଜୀ ପାଠ ପଢ଼ି ବଡ଼ ବଡ଼ ଚାକିରି ପାଇ ପ୍ରଭୂତ ଅର୍ଥ ଓ କ୍ଷମତା ଉପାର୍ଜନ କରିବାର ଉଦାହରଣ

ସେମାନେ ଆଖି ଆଗରେ ଦେଖୁଥିଲେ । ଯେଉଁମାନେ ଇଂରାଜୀ ଗୃହ ଅକ୍ଷର ପଢ଼ୁଥିଲେ ସେମାନଙ୍କର ଆଗ୍ରହ ବ୍ୟବହାର, ସ୍ୱାଛନ୍ଦ୍ୟ, ବେଶଭୂଷାର ପରିପାଟୀ, ନାମମାତ୍ର ଲଜ୍ଜାନିବାରକ ବିଦେଶୀ ବସ୍ତ୍ରର ପରିଧାନ ଓ କଥାବାର୍ତ୍ତାର ପ୍ରଗଲ୍‌ଭତାରେ ପଲ୍ଲୀ ବାଳକମାନେ ସ୍ୱର୍ଗସୁଖ କଳ୍ପନା କରୁଥିଲେ । ଯାହା ବିଦେଶୀ, ତାକୁ ସଭ୍ୟତା ବୋଲି ମନେକରି ସ୍ୱଦେଶୀ ଭାବକୁ ଅସଭ୍ୟତା ବୋଲି କହିବାକୁ ଶିଖୁଥିଲେ । ଏହି ସମୟରେ ଇଂରାଜୀ ପାଠ ପଢ଼ିବା ପାଇଁ ପୁରୀ ସହରକୁ ଆସିଥିଲି ।"

ପଣ୍ଡିତ ଶ୍ରୀ ମଧୁସୂଦନ ମିଶ୍ର ଆଗୃର୍ଯ୍ୟଙ୍କର ଜଣେ ଆଦର୍ଶ ଶିକ୍ଷକ । ସତ୍ତ୍ୱସ୍ଥ ତାର ଯେପରି ସେ ମୂର୍ତ୍ତି ପ୍ରତୀକ ।

"କହଇ ମନ ଆରେ ମୋ ବୋଲ କର
କଳା ଶ୍ରୀମୁଖ ବାରେ ଦେଖିବା ଚାଲ ।"

—ଏହା ହିଁ ଥିଲା ଯାହାଙ୍କର ଯାତ୍ର୍ୟ ପ୍ରାର୍ଥନାର ପ୍ରଧାନ ମନ୍ତ୍ର, ସେହି ମଧୁସୂଦନ ଥିଲେ ଏହି ଭର୍ତ୍ତାକୁଲର ସ୍କୁଲର ହେଡ୍‌ ପଣ୍ଡିତ । ତାଙ୍କର ପାଠ ପଢ଼ାଇବାର ଭଙ୍ଗୀ ବଡ଼ ବିଚିତ୍ର । କେବଳ ହରିହର ନୃହନ୍ତି, ପଣ୍ଡିତ ନୀଳକଣ୍ଠ, ଯେ କି ବିଦ୍ୟାର ଭଣ୍ଡାର, ଯାହାଙ୍କର ପ୍ରତିଭା ଓ ମନୀଷାର ଅନ୍ତ ନାହିଁ, ସେ ମଧ୍ୟ ଏହି ମଧୁସୂଦନଙ୍କର ଛାତ୍ର । ଏହି ମଧୁସୂଦନ ବଡ଼ କ୍ଷଣକୋପୀ ଥିଲେ । ସେ ଛାତ୍ରମାନଙ୍କୁ ବେତାଘାତରେ ଜର୍ଜରିତ କରିଦେଉଥିଲେ । କିନ୍ତୁ ଏଥିରେ ପିଲାମାନଙ୍କର କୌଣସି ଆପତ୍ତି କିମ୍ବା ଅଭିଯୋଗ ନ ଥିଲା । ବ୍ରହ୍ମା ଏହି ସ୍କୁଲର ଦ୍ୱିତୀୟ ଶିକ୍ଷକ ଥିଲେ । ସେ ସେତେ ଗୌରବର୍ଣ୍ଣ ନ ଥିଲେ ।

ବ୍ରହ୍ମାଙ୍କ ସମ୍ବନ୍ଧରେ ଗୋଟିଏ ଗଳ୍ପ ଆମ ଗାଁରେ ପ୍ରଚଳିତ ଅଛି । ପ୍ରତିବର୍ଷ ପଣାସଂକ୍ରାନ୍ତି ଦିନଠାରୁ ଆମ ଗାଁରେ ବାଉରୀମାନଙ୍କର ପାଟୁଆ ଯାତରେ ବାଉରୀମାନେ ବିଚିତ୍ର ବେଶଭୂଷା ଧାରଣ କରି ଜଣେ ପୁରୁଷ ଓ ଅନ୍ୟ ଜଣକ ସ୍ତ୍ରୀ ହୋଇ ଗାଁରେ ଘର ଘର ବୁଲି ନାଚନ୍ତି ଏବଂ ଗୀତ ଗାଆନ୍ତି । ତାହାଙ୍କ ସହିତ ହାଡ଼ିମାନଙ୍କର ଢୋଲ ତାଳ ରକ୍ଷାକରି ସମଗ୍ର ଗ୍ରାମକୁ ମୁଖରିତ କରି ସ୍ପନ୍ଦିତ କରୁଥାଏ । ଏହି ପାଟୁଆମାନେ

ପଇସା ଅର୍ଜିବା ନିମନ୍ତେ ଯାହାଙ୍କ ଦୁଆରେ ନାଚୁଥାନ୍ତି, ତାଙ୍କର ନାମରେ ହାସ୍ୟରସପୂର୍ଣ୍ଣ ଗୀତ ବୋଲି ପଇସା ନେଇ ସେଠାରୁ ବିଦାୟ ହୁଅନ୍ତି ।

ଥରେ ବ୍ରହ୍ମାଙ୍କ ଦୁଆରେ ପାଠୁଆନାଟ ହେଉଥିଲା । ଶେଷରେ ପାଠୁଆମାନେ ଗୀତରେ ବୋଲିଲେ, 'ବରମାଙ୍କ ଦାନ୍ତମୂରେ ହେରା' । ଏହାର ଅର୍ଥ ବୁଝିବା ସାଧାରଣଙ୍କ ପକ୍ଷରେ କଷ୍ଟକର । ଏହାର ତାତ୍ପର୍ଯ୍ୟ ହେଉଛି, ବ୍ରହ୍ମାଙ୍କର ଦେହରୁ ତେଜପୁଞ୍ଜ ବିଚ୍ଛୁରିତ ହୋଇ ଏହି ଅନ୍ଧକାରମୟୀ ରଜନୀକୁ ଆଲୋକିତ କରୁଅଛି । ବ୍ରହ୍ମା ଦାସ ବ୍ୟତୀତ ଆଉ କୌଣସି ନିଶାଦ୍ରବ୍ୟ ଗ୍ରହଣ କରନ୍ତି ନାହିଁ । ତାଙ୍କର ଦାନ୍ତ ସେ କଦାପି ପାନ ଖାଉ ନ ଥିବାରୁ ହୀରା ପରି ଶୁଭ୍ର ଦେଖାଯାଉଛି । ବାଉରୀମାନେ ସେତେବେଳେ ନିତାନ୍ତ ନିରକ୍ଷର ଓ ଅଧଃପତିତ ଥିଲେ । ସେମାନଙ୍କ ତୁଣ୍ଡରେ 'ବରମା', 'ମୂରେ' ଓ 'ହେରା' ଶବ୍ଦ, 'ମୂଳେ', 'ହୀରା' ଓ 'ବ୍ରହ୍ମା' ପାଠୁଆ ଗୀତରେ ରୂପାନ୍ତର ଲାଭ କଲା ଏହିପରି, 'ବରମାଙ୍କ ଦାନ୍ତମୂରେ ହେରା' । ଏଠାରେ ଯେଉଁ ଶିକ୍ଷିତ ଲୋକମାନେ ଉପସ୍ଥିତ ଥିଲେ, ସେମାନେ ଠୋ ଠୋ ହସିଉଠି କୁନ୍ଦାକୁନ୍ଦି ହେଲେ, ଦାନ୍ତମୂଳେ ହେଡ଼ା ବୋଲି ଯାହା ନ କହିଲେ, ଭଗବାନ ବ୍ରହ୍ମାଙ୍କୁ ଏ ବିପତ୍ତିରୁ ରକ୍ଷା କରିଛନ୍ତି । ଯାହାହେଉ, ହରିହର ବଡ଼ ମେଧାବୀ ଓ ବୁଦ୍ଧିମାନ୍ ଛାତ୍ର ଥିଲେ । ଗ୍ରାମର ଭର୍ଣ୍ଣାକୁଲର ସ୍କୁଲରୁ ଉତ୍ତୀର୍ଣ୍ଣ ହୋଇ ସେ ମାସିକ ୪ ଟଙ୍କା ବୃତ୍ତି ପାଇଲେ । ଏହି ଚାରି ଟଙ୍କାରେ ସେ କିପରି ମାସଟାଯାକ ଚଳିଯିବେ, ଆଉ ନନାଙ୍କ ଉପରେ (ବ୍ରହ୍ମା) ନିର୍ଭର କରିବାକୁ ପଡ଼ିବ ନାହିଁ, ସେ ବିଷୟରେ ସେ ବଡ଼ ତତ୍ପର ଥିଲେ । ବ୍ରହ୍ମାଙ୍କର ମାସିକ ବେତନ ମାତ୍ର ଥିଲା ୧୦ ଟଙ୍କା । ହରିହର ପ୍ରଥମେ କେତେ ଦିନ ପାଇଁ ପୁରୀରେ ତାଙ୍କର ଜଣେ ମାମୁଁଅଜାଙ୍କ ଘରେ ରହି ପଢ଼ାପଢ଼ି କରୁଥିଲେ ; କିନ୍ତୁ ସେଠାରେ ନାନା ପ୍ରକାର ଗୋଳମାଳ ହେବାରୁ ତାଙ୍କର ପଢ଼ାପଢ଼ିରେ ବ୍ୟାଘାତ ଜନ୍ମିଲା । ତେଣୁ ସେ ମାମୁଁଅଜା ଘର ଛାଡ଼ି ଗୋଟିଏ ମେସ୍‌ରେ ଯାଇ ରହିଲେ । ସେହି ମେସ୍‌ରେ ସେ କିପରି ଚଳୁଥିଲେ ତାହା ତାଙ୍କର ଡାଏରୀ କମ୍ବା ଦୈନିକ ଲିପିରେ ଏହିପରି ଭାବରେ ଉଲ୍ଲେଖ ଅଛି—"ସେତେବେଳେ ଆମେ ସକାଳେ ଭାତ ରାନ୍ଧୁ ।

ସେଥିରେ ବାଇଗଣ, ଆଳୁ, ସାରୁ ଯାହା ଥାଏ ତାକୁ ସିଝାଇ ନେଉ ଓ ଡାଲି ( ମୁଗ ) ଥିଲେ କନାରେ ବାନ୍ଧି ସେହି ଭାତ ହାଣ୍ଡିରେ ପକେଇ ସିଝାଇ ନେଲ ପରେ ସେହି ସିଝା ଡାଲିକୁ ଅଣକରେ ଚକଟି ସେଥିରେ ପେଜ ମିଶାଇ ଲୁଣ ଟିକିଏ ଦେଇ ଡାଲି କରୁ । ବାଇଗଣ, କଖାରୁ ଯାହା ସିଝା ହୋଇଥାଏ ତାକୁ ଚକଟା କରୁ । ସକାଳେ ଭାତ, ଡାଲି ଖାଉ । ରାତିକୁ ସେହି ସକାଳର ରନ୍ଧାଭାତ ପଖାଳ ଓ ଚକଟା ଖାଉ । କେବେ କେବେ ଗ୍ରାମରୁ କେହି ଆସିଲେ ରାତିଠାରେ ରାନ୍ଧିଦିଅନ୍ତି । ସେ ଦିନକ ସୁଖରେ ତତଲା ଭାତ ଡାଲି ରାତିରେ ମଧ୍ୟ ଖାଉ । ଦୁଇଓଳି ରୋଷେଇ କରି ଖାଇବାକୁ ଇଚ୍ଛା ଥିଲେ ମଧ୍ୟ ପାଠପଢ଼ାରୁ ଏତେ ସମୟ ରୋଷେଇରେ ଦେବାକୁ ସମୟ ନ ଥାଏ ।”

ପୁରୀରେ ରହି ଜିଲ୍ଲା ସ୍କୁଲରେ ପଢ଼ୁଥିଲାବେଳେ ସେ ତାଙ୍କର ଜ୍ଞାତିଭାଇ ଡେପୁଟି ଗୋପୀନାଥ ଦାଶଙ୍କ ବସାରେ ପ୍ରାୟ ୧ ବର୍ଷ ରହିଥିଲେ । ଏହି ଗୋପୀ ଭାଇନା ହରିହରଙ୍କୁ ବହୁ ଭାବରେ ପ୍ରଭାବିତ କରିଥିଲେ । ସେ ହରିହରଙ୍କୁ ସାଙ୍ଗରେ ନେଇ କପରି ସୁଆଣ୍ଡୋର ଗୋପବନ୍ଧୁ ଦାଶଙ୍କ ସହିତ ଦେଖା କରାଇଲେ, ତାହାର ବିବରଣୀ ନିଜେ ହରିହର ଏହିପରି ଦେଇଅଛନ୍ତି —

“ମୁଁ ପୁରୀ ଆସିବା ପରଦିନ ଗୋପୀ ଭାଇନାଙ୍କ ସାଙ୍ଗରେ ଦାସେ ଆପଣଙ୍କୁ ଭେଟିବାକୁ ଗଲି । ବାଟରେ ଆପଣେ ଆସୁଥିବାର ଦେଖିଲି । ମୁଁ ପିନ୍ଧି ଯାଇଥିଲି ରଙ୍ଗଣୀ ଖଦି । ଦାସେ ଆପଣେଙ୍କୁ ଦେଖିଲି, ସେ ପିନ୍ଧିଥିଲେ କଳାପାହାଡ଼ ଖଦି, ଅବଶ୍ୟ ମୋ ଖଦିଠାରୁ ଅଳ୍ପ ସରୁ । ତାଙ୍କର ଏ ବେଶଭୂଷା ଦେଖି ମୋର ବିଲାତି ପତଳା ଲୁଗା ପିନ୍ଧିବାର କଳ୍ପନା ଏକାବେଳେ ଉଭେଇଗଲା । ଦାସେ ଆପଣେଙ୍କ ସାଙ୍ଗରେ ଆଳାପ ହେଲା ପରେ ସେ ମୋତେ ଅତି ଆପଣାର କରିନେଲେ । ମୁଁ ମୋ ଜୀବନରେ କାହାରିକୁ ଗୁରୁ କରିବା ମୋର ମନେ ନାହିଁ । ଏପରି କି ମୋର କର୍ଣ୍ଣମନ୍ତ୍ରଦାତା ଗୁରୁ ମଧ୍ୟ କେହି ନାହାନ୍ତି । ମୋ ନନା ମୋତେ ଅନେକ ଥର ମନ୍ତ୍ରଗୁରୁ କରିବା ପାଇଁ କହିଛନ୍ତି; କିନ୍ତୁ ମୁଁ ସେଥିରେ

ରାଜ ହୋଇ ନାହିଁ । କାରଣ ମୁଁ ଯେଉଁଦିନ ଦାସେ ଆପଣଙ୍କୁ ପ୍ରଥମେ ଭେଟିଲି, ସେହି ଦିନଠାରୁ ତାଙ୍କୁ ଗୁରୁ ଆସନରେ ବସାଇ ସାରିଥିଲି ।”

ଗୋପବନ୍ଧୁଙ୍କ ସହିତ ଏହି ସାକ୍ଷାତ ପରେ ହରିହରଙ୍କର ଜୀବନ ନୂତନ ଆଦର୍ଶର ପନ୍ଥା ଲାଭକଲା । ସେ ଶୁଣିଥିଲେ ଗୋପବନ୍ଧୁ ଦୀନ ଓ ଦୁର୍ଭିକ୍ଷଗ୍ରସ୍ତ ଲୋକମାନଙ୍କର ପ୍ରାଣର ବନ୍ଧୁ । ସେମାନେ ଦିଓଳ ମୁଠେ ମୁଠେ ଭାତ ଖାଇବାକୁ ପାଉ ନାହାନ୍ତି । ଏହି କଥା ଦେଖି ଗୋପବନ୍ଧୁ ନିଜେ ଘୋର ଦୁଃଖ ଅନୁଭବ କରି ଅଶ୍ରୁପୂର୍ଣ୍ଣ କଣ୍ଠରେ କହୁଥିଲେ— “ଏହିମାନଙ୍କର ସେବା କରିବା ଆମର ପ୍ରଧାନ କର୍ତ୍ତବ୍ୟ ।” ତେଣୁ ହରିହରଙ୍କର ହୃଦୟ ଆପେ ଆପେ ଅଲକ୍ଷିତ ଭାବରେ ଗୋପବନ୍ଧୁଙ୍କ ହୃଦୟ ସହିତ ମିଶିଗଲା । ଗୋପୀ ଭାଇନା ମଧ୍ୟ ସେହିପରି ଜଣେ ନୈଷ୍ଠିକ ଓ ନୀରବ ଜନସେବକ ଥିଲେ । ଗୋପବନ୍ଧୁଙ୍କ ଆତ୍ମାର କେତେକ ଅଂଶ ତାଙ୍କର ଆତ୍ମାରେ ଲୀନ ହୋଇ ରହିଥିଲା । ସେ ଛୁଟିରେ ଗାଁକୁ ଆସିଲେ ଗୋଟିଏ ଧୋତି, ଗଳାବନ୍ଧା କୋଟ୍ ଓ ପାଦରେ ହଳେ ଜୋତା ପିନ୍ଧି ଗାଁଯାକ ବୁଲିଆସନ୍ତି । ଗାଁର ଗଣ୍ୟମାନ୍ୟ ଓ ବୟୋଜ୍ୟେଷ୍ଠ ଲୋକଙ୍କ ସାଙ୍ଗରେ ତାଙ୍କ ପିଣ୍ଡାରେ ବସି ବହୁ ସମୟ କଥାବାର୍ତ୍ତା ହୁଅନ୍ତି । ଆଗ୍ରହୀ ହରିହରଙ୍କ ପରି ସେ ଥିଲେ ଅଜାତଶତ୍ରୁ । ତାଙ୍କର କଣ୍ଠ କି ନମ୍ର ଓ ମଧୁର ! ପ୍ରତି କଥାରେ ଯେପରି ଅମୃତର ଧାରା ବହିଯାଉଛି । ସେ ତାଙ୍କର ପୁଅମାନଙ୍କୁ ସେହିପରି ଭାବରେ ପ୍ରଭାବିତ କରି ରଖିଥିଲେ । ଏପରି ମିଷ୍ଟାଳାପୀ ଲୋକ ସେତେବେଳେ ଆମ ଗାଁରେ କାହିଁକି, ସରକାରୀ ମହଲରେ ଖୁବ୍ କମ୍ ଥିବାର ଦେଖାଯାଉଥିଲା । ଏହି ଗୋପୀ ଭାଇନାଙ୍କୁ ଧନ୍ୟ କହିବାକୁ ହେବ । ସେ ହରିହରଙ୍କୁ ନେଇ ଗୋପବନ୍ଧୁଙ୍କ ସାଙ୍ଗେ ମିଳାଇଦେଇ ତାଙ୍କୁ ଜନସେବାର ଯୋଗ୍ୟସ୍ଥଳୀ ପୁରୀରେ ଏହି ସେବା-ମନ୍ଦିର ସୌଧ ଗଢ଼ିଦେଲେ । ଜଣେ ଲେଖକଙ୍କ ଭାଷାରେ, “ସେବକ ହରିହରଙ୍କର ‘ମୂଳଦୁଆ ଶୋଧ’ ହୋଇଥିଲା ତାଙ୍କ ଛାତ୍ରଜୀବନବେଳେ । ସେତିକବେଳେ ମଜବୁତ ମୂଳଦୁଆ ନ ପଡ଼ିଥିଲେ ତା’ ଉପରେ ଦୀର୍ଘ ସତୁରି ବର୍ଷର ‘ସେବା-ସୌଧ’ ମୁଣ୍ଡଟେକି ଠିଆ ହୋଇପାରି ନ ଥାନ୍ତା । ହାଇସ୍କୁଲରେ ପଢ଼ିଲାଦିନୁ ହିଁ ତାଙ୍କର ମନ ଗଲା ଲୋକହିତକର

କାମ କରିବା ପାଇଁ । କାହାର ରୋଗ ହେଲେ ସେବା କରିବା, ଲୋକ ଅଭାବରେ ପଡ଼ିଲେ ମଡ଼ା ଉଠାଇଦେବାରେ ସାହାଯ୍ୟ କରିବା, ଗାଁ ସ୍କୁଲ ପାଇଁ ଚନ୍ଦା, ବାଉଁଶ ସଂଗ୍ରହ କରିବା ଓ ଗାଁର ନିରକ୍ଷର ଲୋକଙ୍କୁ ପାଠ ପଢ଼ାଇବା କାମ ସେହି ଅଳ୍ପ ବୟସରୁ ସେ କରିଥିଲେ । ସେବା ହିଁ ଥିଲି ତାଙ୍କର ସହଜାତ ଗୁଣ । ସେ ନିଆଁରେ ଗୁରୁ ଗୋପବନ୍ଧୁ ମଝିରେ ମଝିରେ ବରାବର 'ଉତ୍ସାହ ଘିଅ' ଢାଳନ୍ତି; ତେଣୁ ତାହା କେବେହେଲେ ଲିଭି ନ ଥିଲି । ଓଡ଼ିଶାରେ ଯେଉଁମାନେ ବଢ଼ି, ମରୁଡ଼ି, ଦୁର୍ଭିକ୍ଷ, ହଇଜା ବେଳେ ବେସରକାରୀ ସାହାଯ୍ୟ ବା ସେବାର ଇତିହାସ ଜାଣନ୍ତି, ସେମାନେ ସ୍ୱୀକାର କରିବେ ଯେ ଆଚାର୍ଯ୍ୟ ମହାଶୟ ହିଁ ଗୋଟିଏ ସଂଗଠିତ ସେବାର ମୂଳଦୁଆ ଏ ପ୍ରଦେଶରେ ପକାଇଥିଲେ । ଯୁବକମାନଙ୍କୁ ସଂଗଠିତ କରି ସେବା ବାଟରେ ବ୍ରତୀ କରାଇବାର କୌଶଳ ତାଙ୍କୁ ଜଣାଥିଲି ।"

ପୁରୀରେ ଏନ୍‌ଟ୍ରାନ୍‌ସ ପଢ଼ିଲାବେଳେ ଦେଶସେବା କାର୍ଯ୍ୟରେ ହରିହରଙ୍କୁ ବ୍ରତୀ କରାଇଥିଲେ ଏବଂ ଏହି ଦେଶସେବା ମନ୍ତ୍ରରେ ତାଙ୍କୁ ଉଦ୍‌ବୁଦ୍ଧ କରିଥିଲେ ଶ୍ରୀ ଗୋପବନ୍ଧୁ ଦାସ । କିନ୍ତୁ ଗୋପବନ୍ଧୁ ଦାସ ନିଜେ ବହିର୍ମୁଖୀ ସେବାରେ ଉଦ୍‌ବୁଦ୍ଧ ହୋଇଥିଲେ କାହାଦ୍ୱାରା ? ଏଥିନିମନ୍ତେ ଦାୟୀ ତାଙ୍କର ସହାନୁଭୂତିଶୀଳ, ପରଦୁଃଖକାତର ଓ ଜାତୀୟ ଭାବାପନ୍ନ ହୃଦୟ ଏବଂ ତହିଁ ସହିତ ଜଡ଼ିତ ଥିଲି ପୁରୀର ମୁକ୍ତ୍ୟାର ଶ୍ରୀ ରାମଚନ୍ଦ୍ର ଦାଶଙ୍କର ପ୍ରେରଣା ଓ ତହିଁ ସଙ୍ଗେ ଆଗରୁ କୁହାଯାଇଥିବା ଶ୍ରୀରାମଚନ୍ଦ୍ର-ପୁରର ନବଯୁଗର ପ୍ରବର୍ତ୍ତକ ଏବଂ ପୁରୀ ସଂସ୍କୃତ କଲେଜର ପ୍ରତିଷ୍ଠାତା, ଅପୂର୍ବ ସାହସୀ ଓ ସ୍ୱଦେଶହିତୈଷୀ ପଣ୍ଡିତପ୍ରବର ଶ୍ରୀ ହରିହର ଦାଶ । ନୀଳକଣ୍ଠ ଓ ହରିହର ପ୍ରଭୃତି ଗ୍ରାମର ଯୁବକମାନେ କୁମାର ପୂର୍ଣ୍ଣିମାରେ ଅନୁଷ୍ଠିତ ହେଉଥିବା ଏହି ହରିହର ଦାଶଙ୍କର ସଂସ୍କୃତସଭାରେ ହରିହରଙ୍କ ପାଣ୍ଡିତ୍ୟ ଓ ବୁଦ୍ଧିମତ୍ତା ସମ୍ପର୍କରେ ଗୋପବନ୍ଧୁଙ୍କ ବକ୍ତୃତା ଶୁଣି ତନ୍ମୟ ହୋଇଯାଉଥିଲେ । ନୀଳକଣ୍ଠ ତାଙ୍କର ଆତ୍ମଜୀବନୀରେ ଏ ସମ୍ବନ୍ଧରେ ଲେଖିଅଛନ୍ତି, "ଏ ସମସ୍ତ ପ୍ରଭାବ ମୂଳରେ ଥିଲେ ଗୋପବନ୍ଧୁ । ତାଙ୍କର କିନ୍ତୁ ପ୍ରଭାବର ପୀଠ ଥିଲେ ଓଡ଼ିଶାର ପୁଣ୍ୟଶ୍ଳୋକ ପଣ୍ଡିତ ହରିହର

ଦାଶ; ସେ ନିହଉନନ୍ଦ ଧୁସ୍ତ ସଂସ୍କୃତ କଲେଜର ପ୍ରତିଷ୍ଠାତା । ଏହି କଲେଜକୁ ସେ ଯାହା କଳ୍ପନା କରିଥିଲେ ଓ ସମାଜ ସଂସ୍କାର ଦିଗରେ ତାଙ୍କର ଯେଉଁ ପ୍ରେରଣା ଓ ଦୂରଦୃଷ୍ଟି ଥିଲା, କେଜାଣି କିପରି ଗୋପବନ୍ଧୁ ସେଥିରେ ତନ୍ମୟ ଥିଲେ । ଆମେ କେହି ତାଙ୍କୁ ଦେଖି ନାହୁଁ, ଗୋପବନ୍ଧୁ ବି ଦେଖି ନ ଥିଲେ । ତାଙ୍କର ମୃତ୍ୟୁ ୧୮୭୪ ଫେବୃୟାରୀ ମାସରେ । ଅତି ଅକାଳରେ ସେ ଇହଧାମ ଛାଡ଼ିଥିଲେ; କିନ୍ତୁ ତାଙ୍କର ଆତ୍ମା ଯେପରି କି ଗୋପବନ୍ଧୁଙ୍କୁ ଚିରପ୍ରଭାବିତ କରିଥିଲା । ଫର୍ଗୁସନ୍ କଲେଜଠାରୁ ହାର୍ଭାର୍ଡ, ଇଟନ୍, ରୁଗ୍‌ବି ପର୍ଯ୍ୟନ୍ତ ସମସ୍ତଙ୍କୁ ଯେପରି କି ଆମ୍ଭେମାନେ ସେଇ ହରିହରଙ୍କ କଳ୍ପନା ଓ ଉଦାହରଣ ଭଳି ଦେଖିଥିଲୁ । ଗୋପବନ୍ଧୁ ତନ୍ମୟ ହୋଇ ହରିହରଙ୍କ କଥା କହନ୍ତି । ହରିହରଙ୍କୁ ଘେନି ଗୋପବନ୍ଧୁ ସେକାଳ 'ମୁକୁର'ରେ ଗୋଟିଏ କବିତା ଲେଖିଥିଲେ । ସତ୍ୟବାଦୀ ବିଦ୍ୟାଳୟର ପୂର୍ବରୁ ସେ କବିତାଟି ଲେଖାହୋଇଥିଲା । ସେ 'ମୁକୁର' ମୋ ପାଖରେ ନାହିଁ । ସେଥିରୁ ଯୋଡ଼ିଏ ଧାଡ଼ି ମୋର ସବୁବେଳେ ମନେଅଛି—

"ମୂକ ହୋଇ କରି ଆଜି ଯାଏଁ ହରି
ଯେବେ ରହିଥାନ୍ତ ବଞ୍ଚି !
ଓଡ଼ିଆଙ୍କ ହାତେ ଦେଇଥାନ୍ତ ସତେ
ଉନ୍ନତି-ଭଣ୍ଡାର କଞ୍ଚି ।"

କବିତାଟିର ଶେଷ ଧାଡ଼ିଟି ହେଉଛି :—

"ଆସ ହରିହର ପଣ୍ଡିତ ପ୍ରବର
ସମାଜ ସଂସ୍କାର କର ।"

ହରିହର ମରିବାର କେତେ ଦିନ ପୂର୍ବରୁ ମୂକ ଓ ପାଗଳ ହୋଇଯାଇଥିଲେ ।"

ପ୍ରାୟ ୬୦ ବର୍ଷ ପୂର୍ବେ ବ୍ରହ୍ମପୁରରୁ ପ୍ରକାଶିତ ଏବଂ ୰ ଶଶୀଭୂଷଣ ରଥଙ୍କଦ୍ୱାରା ସମ୍ପାଦିତ 'ପ୍ରଦୀପ' ମାସିକ ପତ୍ରିକାରେ ଶ୍ରୀ ନାରାୟଣ ଶିରୋମଣି "ପଣ୍ଡିତ ହରିହର ଦାଶ ଓ ଓଡ଼ିଶା ସଂସ୍କୃତ କଲେଜ" ପ୍ରବନ୍ଧରେ ଉଲ୍ଲେଖ କରିଥିଲେ, "ଆଧୁନିକ ଶିକ୍ଷାପ୍ରବର୍ତ୍ତକ ଏହି ପଣ୍ଡିତ ମହାଶୟ ବିଦ୍ୟାଳୟର ପ୍ରାରମ୍ଭରେ ଯେପରି କଳ୍ପନା କରିଥିଲେ, ଏହାଙ୍କ ଅନ୍ତରରେ ମଧ୍ୟ ଏହି ଶିକ୍ଷାନୁଷ୍ଠାନଟି ବରାବର ସେହିପରି ଦୃଢ଼ହୋଇ ଜାଜ୍ୱଲ୍ୟମାନ ରହିଅଛି । ଦୀପରୁ ଦୀପ ଜଳିଲା ପରି ଏହାଙ୍କ ବଂଶଧର କବିବର ସୁପଣ୍ଡିତ ବାବୁ ନୀଳକଣ୍ଠ ଦାସ ଏମ୍. ଏ. ଶ୍ରେଣୀର ଶିକ୍ଷକତା ଛାଡ଼ି ଅସହଯୋଗ ବ୍ରତରେ ପଣ୍ଡିତ ଦାସ ମହାଶୟଙ୍କ ସଙ୍କଳ୍ପିତ ଅନ୍ୟାନ୍ୟ ଦେଶହିତକର କାର୍ଯ୍ୟମାନ ସମ୍ପାଦନ କରୁଅଛନ୍ତି ।"



# ଭଲ ମଣିଷ ହୁଅ

## ( କଟକ କଲେଜରେ ହରିହର )

—୧—

'ଦେଶକେ ଫାଙ୍କ, ନଈ କେ ବାଙ୍କ ।' ଏହିପରି ଗୋଟିଏ କଥା ଆମ ଦେଶରେ ଅଛି ! ଏହାର ଅର୍ଥ ହେଲା, ଦେଶ ଦେଶ ମଧ୍ୟରେ ଯେପରି ନାନା ବିଷୟରେ ପ୍ରଭେଦ ଦେଖାଯାଏ ଏବଂ ଗୋଟିଏ ନଈ ବହିଗଲାବେଳେ ଯେପରି ସରଳ ଗତିରେ ନ ଯାଇ ବଙ୍କ ଗତିରେ ଯାଏ, ସେହିପରି ଆଚାର୍ଯ୍ୟ ମହାଶୟଙ୍କର ଏଣ୍ଟ୍ରାନ୍ସ ପାସ କରିବା ସମ୍ବନ୍ଧରେ ବିଭିନ୍ନ ମତ ଦେଖିବାକୁ ମିଳେ । ଶ୍ରୀ ନରହରି ସ୍ୱାଇଁ କହନ୍ତି, ହରିହର ୧୯୦୧ ମସିହାରେ ବୃତ୍ତି ପାଇ ଏଣ୍ଟ୍ରାନ୍ସ ପରୀକ୍ଷାରେ କୃତିତ୍ୱର ସହିତ ଉତ୍ତୀର୍ଣ୍ଣ ହୋଇ ରେଭେନ୍ସା କଲେଜରେ ନାମ ଲେଖାଇଲେ ।' କିନ୍ତୁ ତାଙ୍କ ଗ୍ରାମବାସୀ ପଣ୍ଡିତ ନୀଳକଣ୍ଠ କହନ୍ତି, ୧୯୦୩ / ୧୯୦୪ରେ ତିନହେଁ କଟକ କଲେଜ ହଷ୍ଟେଲରେ ଥିଲୁ । ଗୋପବନ୍ଧୁ ପଢ଼ୁଥିଲେ ଓକିଲାତି; ହରିଭାଇନା ପଢ଼ୁଥିଲେ ଏଫ. ଏ. ଓ ମୁଁ ପଢ଼ୁଥିଲି ଏଣ୍ଟ୍ରାନ୍ସ କ୍ଲାସମାନଙ୍କରେ । ସେତିକିବେଳୁ ମଝିମଝି ମାଟ୍ସିନି, ଗାରିବାଲ୍ଡି ପ୍ରଭୃତିଙ୍କ କଥା ମଧ୍ୟ ପଢ଼ାଯାଉଥିଲା । ତା' ସାଙ୍ଗେ ସେକାଳର ଓଡ଼ିଆ ସାହିତ୍ୟ ଓ କଲିକତା ବିଶ୍ୱବିଦ୍ୟାଳୟ ଏବଂ ବଙ୍ଗାଳୀଙ୍କର ତା' ପ୍ରତି ଅନାସ୍ଥା, ସମାଲୋଚନାର ଅଭାବ, କାବ୍ୟ ନାଟକାଦି ବୋଲି ଯାହା ଲେଖା ହେଉଥିଲା, ସେଥିରେ ଗୌଣିକ ମନୋବୃତ୍ତି ସଙ୍ଗେ ଅନୁକୃତି ଓ ପ୍ରାଣହୀନତା ସେସବୁର ଭବିଷ୍ୟତ, ତହିଁ ସଙ୍ଗେ ଦେଶ ପ୍ରଦେଶର ଭବିଷ୍ୟତ ପ୍ରଭୃତି କଥା ଅତି ଅତର୍କିତ ଭାବରେ ବରାବର ଚାଲୁଥିଲା ।" ରେଭେନ୍ସ

କଲେଜ ସେତେବେଳେ କାଠଯୋଡ଼ି ନଈ କୂଳରେ ଅବସ୍ଥିତ ଥିଲା । ପ୍ରାୟ ସବୁ ଅଧ୍ୟାପକ ବଙ୍ଗାଳୀ । ଅଧ୍ୟକ୍ଷ ଥାନ୍ତି ଗଣିତଜ୍ଞ ବି. ଭି. ଗୁପ୍ତ । ଏବଂ ପରେ ଆସି ଯୋଗଦେଲେ ଶ୍ରୀ ନୀଳକଣ୍ଠ ମଜୁମ୍‌ଦାର । ଦୁହେଁ ଅବଶ୍ୟ ଅତି ପ୍ରବୀଣ ଓ ବିଜ୍ଞ । 'ହରିଭାଇନା' ଏହି ବିଷୟରେ ନୀଳକଣ୍ଠ ତାଙ୍କର ଆତ୍ମ ଜୀବନୀରେ ଉଲ୍ଲେଖ କରିଅଛନ୍ତି, "କହୁଥିଲି ଗୋପବନ୍ଧୁ ଦାଶଙ୍କ କଥା । ସେ ସେତେବେଳେ ବି. ଏ. ପଢ଼ୁଥାନ୍ତି କି ବି. ଏ. ପାସ କରି ଓକିଲାତି ପଢ଼ୁଥାନ୍ତି, ଠିକ୍ ମନେପଡ଼ୁ ନାହିଁ । କିନ୍ତୁ ବୋର୍ଡିଂରେ ଥା'ନ୍ତି । ତାଙ୍କ ସଙ୍ଗେ ଥାନ୍ତି ଆମର ହରିଭାଇନା (ଏବର ଆଗୃର୍ଯ୍ୟ ହରିହର ଦାଶ) 'ହରିହର ଦାଶ ହେଉଛନ୍ତି ଆମ ଗ୍ରାମର, ମୋର ଜ୍ଞାତି, ବଡ଼ଭାଇ । ମୋ'ର ଏକା ସେ ଥିଲେ ହରିଭାଇନା । ପରେ ସମସ୍ତେ ତାଙ୍କୁ ହରିଭାଇନା ବୋଲି ଡାକିଲେ ।

ଏଥିପୂର୍ବରୁ ହରିଭାଇନା ତାଙ୍କ କଥା ଆମ ଆଗେ ଖୁବ୍ କହୁଥିଲେ । ଗୋପବନ୍ଧୁ ଦାସଙ୍କ ଘର 'ଶୁଆଣ୍ଡା' ଆମ ଗ୍ରାମର ପ୍ରାୟ ପାଞ୍ଚମାଇଲ ଦୂରରେ, ଭାର୍ଗବୀ ଉପରେ ବଲପୁର ଆର ପାଖେ । ଥରେ ଆମକୁ ଘେନି ସେ ଗୋପବନ୍ଧୁ ଦାସେ ଛୁଟିରେ ଗ୍ରାମରେ ଥିବାବେଳେ ତାଙ୍କ ଗ୍ରାମକୁ ଯାଇଥିଲେ । ସଙ୍ଗରେ ଥିଲେ ଅନନ୍ତ ମିଶ୍ର । ସେ ସେତେବେଳେ ପୁରୀ ଜିଲ୍ଲା ସ୍କୁଲର ଛାତ୍ର । ଅନନ୍ତ ମିଶ୍ରେ ( ପ୍ରଗୃରକ ଅନନ୍ତ ମିଶ୍ରେ ) ସେ ମଧ୍ୟ ଆମରି ଗାଁର ହରିଭାଇନାଙ୍କ ସାନ ଶଳା । ସେଇଦିନ ଗୋପବନ୍ଧୁ ଦାସଙ୍କ ( ପରେ ତାଙ୍କୁ ଆମେ ଡାକୁଥିଲୁ 'ଦାସେ ଆପଣେ ) ସଙ୍ଗେ ଭଲ ପରିଚୟ । ସେ ଘଟଣା ମୋ ପକ୍ଷରେ ସ୍ମରଣୀୟ ।"

ଉତ୍କଳମଣି ଗୋପୀନାଥ ଦାଶଙ୍କୁ ଯେପରି ହରିହର ଗୋପୀଭାଇନା ବୋଲି ଡାକୁଥିଲେ, ସେହିପରି ନୀଳକଣ୍ଠ ହରିହରଙ୍କୁ ହରିଭାଇନା ବୋଲି ଡାକୁଥିଲେ । ଥରେ ସତ୍ୟବାଦୀ ସ୍କୁଲର ହେଡ଼ମାଷ୍ଟର ଥିବା ସମୟରେ ନୀଳକଣ୍ଠ କେତେକ ଛାତ୍ରଙ୍କୁ ସେମାନଙ୍କର ନାମ ସ୍କୁଲ ସଂଲଗ୍ନ ସଂସ୍କୃତ ଟୋଲରେ ଲେଖାଇ ପ୍ରଥମା ପରୀକ୍ଷା ନିମନ୍ତେ ସେମାନଙ୍କୁ ଘନ ଘନ ପ୍ରରୋଚନା ଦେଉଥିଲେ । ତଥାପି ଛାତ୍ରମାନେ ଏଥିରେ ବିଶେଷ ଭାବରେ

ମନ ପ୍ରାଣ ଦେଉ ନ ଥିଲେ । କାରଣ ଏଣେ ସେମାନଙ୍କର ଛାତ୍ରାବାସର ଦୈନନ୍ଦିନ କର୍ତ୍ତବ୍ୟ, ସ୍କୁଲର ପଢ଼ାପଢ଼ି ଓ ଅନ୍ୟାନ୍ୟ ସାମାଜିକ ହିତକର କାର୍ଯ୍ୟରେ ସେମାନେ ସଦାସର୍ବଦା ବ୍ୟାପୃତ ରହୁଥିବାରୁ ସେମାନଙ୍କୁ ସିଦ୍ଧାନ୍ତ କୌମୁଦି ଓ ଶ୍ରୁତବୋଧର ସୂକ୍ଷ୍ମ ସୂତ୍ରଗୁଡ଼ିକ ବଡ଼ ଅଡ଼ୁଆ ଲାଗୁଥିଲା । ଦିନେ ସେହି ଛାତ୍ରମାନଙ୍କୁ ଡାକି ନୀଳକଣ୍ଠ ପଚାରିଲେ, "ତୁମ ସଂସ୍କୃତ ପଢ଼ା କେଉଁଠା ପର୍ଯ୍ୟନ୍ତ ଗଲା ? ଶ୍ରୁତବୋଧରେ ଥିବା ସଂସ୍କୃତ ଛନ୍ଦ ସବୁ ମୁଖସ୍ଥ କରିଛତ ?"

ସତ୍ୟବାଦୀର ପିଲାମାନେ ସତ୍ୟ କହି ଶିଖିଛନ୍ତି । ସେମାନେ ଶିଖିଛନ୍ତି ସମସ୍ତ ଶିକ୍ଷକଙ୍କଠାରୁ, 'ସତ୍ୟଂ ବ୍ରୂୟାତ୍', 'ପ୍ରିୟଂ ବ୍ରୂୟାତ୍' ସତ୍ୟ ତଥା ଏବଂ ପ୍ରିୟ କଥା କହିବ । ସତ୍ୟପଥରୁ କଦାପି ବିଚଳିତ ହେବ ନାହିଁ । ସେ ଛାତ୍ରଟି 'ନାହିଁ' କରିବା ସଙ୍ଗେ ସଙ୍ଗେ ନୀଳକଣ୍ଠର କ୍ଷଣକୋପୀ ରାଗ ସମ୍ଭାଳି ନ ପାରି ପାଖରେ ନିର୍ବାକତାର ପ୍ରତିମୂର୍ତ୍ତି ସ୍ୱରୂପ ଠିଆହୋଇଥିବା ଆଚାର୍ଯ୍ୟ ହରିହର ଦାଶଙ୍କୁ କହିଲେ, 'ଦେଖୁଛ, ହରିଭାଇନା, ଏମାନେ କୌଣସି କଥା ଶୁଣୁ ନାହାନ୍ତି । ପାଠ ପଢ଼ିବାକୁ ଏମାନଙ୍କର ଆଗ୍ରହ ନାହିଁ । ଏମାନେ ଭାବୁଛନ୍ତି, ସଂସ୍କୃତ ଗୋଟାଏ ଅପଦାର୍ଥ ଜିନିଷ । ଆଉ ତ ସଂସ୍କୃତ ପରୀକ୍ଷା ରହିଲା ୧୦ ଦିନ । କେଉଁ ଦିନ ତୁମ୍ଭେମାନେ ଶ୍ରୁତବୋଧ ( ଛନ୍ଦ ପ୍ରକରଣ ) ପଢ଼ିବ ? ଛନ୍ଦ ପ୍ରକରଣରେ ୬୦ ନମ୍ବର ଅଛି । ପରୀକ୍ଷା ୩ ଦିନ ମାତ୍ର ଥାଏ, ଜାଗର ଅମାବାସ୍ୟା ପୂର୍ବଦିନ ନୀଳକଣ୍ଠବାବୁ ରାତି ପ୍ରାୟ ୧୨ଟା ବେଳେ କହିଲେ, "କିରେ ଶ୍ରୁତବୋଧ ତ ପଢ଼ିଲ ନାହିଁ, ପାସ୍ କରିବ କିପରି ? ଆରବର୍ଷ ପିଲାମାନେ ଶ୍ରୁତବୋଧ ଯୋଗୁ ତ ଫେଲ୍ ହୋଇଥିଲେ ।" ଏହା ଶୁଣି ପିଲେ କହିଲେ, "ତେବେ ଆଉ ପରୀକ୍ଷା ଦେବୁ କାହିଁକି ?" ନୀଳକଣ୍ଠ କିନ୍ତୁ ତୁନିହୋଇ ବସିଲେ ନାହିଁ, ସେ ସଂସ୍କୃତ ପରୀକ୍ଷା ଦେଉଥିବା ପିଲାମାନଙ୍କୁ ନେଇ ଆଲୁଅ ଲଗାଇ ଲାଇବ୍ରେରୀରୁ ରାତି ରାତି ବହି ଆଣି ପଢ଼ିଲେ । ତହିଁ ଆରଦିନ ଜାଗର । ପିଲେ ଜିଗରଧରି ବସିଲେ ଆମ୍ଭେ-ମାନେ ପରୀକ୍ଷା ଦେବୁ ନାହିଁ । ଶ୍ରୁତବୋଧ ତ ହୋଇ ନାହିଁ ପରୀକ୍ଷା-

କାହିଁକି ଦେବୁ ?" ସେ ଏହା ଶୁଣି ଭାରି ବିରକ୍ତ ହେଲେ । ପାଖରେ ଥିଲେ ହରିଭାଇନା ଓ ଗୋପବନ୍ଧୁ । ନୀଳକଣ୍ଠ ଉତ୍ତ୍ୟକ୍ତ ହୋଇ କହିଲେ, "ଦେଖନ୍ତୁ ହରିଭାଇନା, ଦେଖନ୍ତୁ ଆପଣେ, ଏ ପିଲାମାନେ କି ଜଘନ୍ୟ । ଶିକ୍ଷକ ପଢ଼ାଇବାକୁ ବ୍ୟଗ୍ର—ଛାତ୍ର ଅନିଚ୍ଛୁକ । ଏହା କ'ଣ ସତ୍ୟବାଦୀ ସ୍କୁଲର ପରିଣତି ?" ଗୋପବନ୍ଧୁ ନୀରବହୋଇ କେବଳ ଶୂନ୍ୟକୁ ଚାହିଁ ରହିଲେ । ହରିଭାଇନା କହିଲେ, "ହାଇରେ ପିଲେ, ତୁମେ କାହିଁକି ନୀଳକଣ୍ଠଙ୍କୁ ଏପରି ହଇରାଣ କରୁଛ ? ମନଦେଇ ପଢ଼ ।" ଏହି ଦୃଷ୍ଟାନ୍ତଟି ଏଠାରେ ଦେବାର ନ ଥିଲା । କିନ୍ତୁ ନୀଳକଣ୍ଠଙ୍କର 'ହରିଭାଇନା' ଏହି ସମ୍ବୋଧନର ଗୁରୁତ୍ୱ ଦେଖାଇବା ନିମନ୍ତେ ଏଠାରେ ଆବଶ୍ୟକ ନ ଥିଲେ ସୁଦ୍ଧା ଦେବାକୁ ପଡ଼ିଲା ।

ଏମାନେ ଯାହା ସଂକଳ୍ପ କରୁଥିଲେ, ତାହା କିପରି ଭାବରେ ଅସାଧ୍ୟ ହେଉ ପଛକେ, ତାକୁ ବାସ୍ତବତାରେ ରୂପାନ୍ତରିତ କରୁଥିଲେ, ତାହାର ଜ୍ୱଳନ୍ତ ଉଦାହରଣ ନିମ୍ନ ଲିଖିତ ଘଟଣାରୁ ଜଣାଯାଏ । ନୀଳକଣ୍ଠ ତାଙ୍କ ଆତ୍ମ ଚରିତରେ ଲେଖିଛନ୍ତି, କିପରି ସେ ହରିଭାଇନା ଓ ଅନନ୍ତ-ମିଶ୍ରଙ୍କ ସହିତ ଗାଁରୁ ଯାଇ ଶୁଆଣ୍ଡଠାରେ ଭାଗବତ ଅଧ୍ୟୟନରତ ଗୋପବନ୍ଧୁଙ୍କ ସହିତ ଦେଖାକଲେ, "ଦେବୀ ନଦୀରକୁ ଲାଗିଛି ଭାର୍ଗବୀ ନଦୀର ବନ୍ଧ । ବନ୍ଧ ତଳକୁ ପାଣି । ପାଣି ପରେ ନଈ ଭିତର ବାଲି । ସେଇ ବାଲି ଭିତରେ ଖରାଦିନେ ହୁଏ ବଳପୁର ମୌଜାର ଶ୍ମଶାନ । ସେଦିନ ସଂଧ୍ୟାବେଳକୁ ଜହ୍ନ ପଡ଼ିଗଲା । ଆକାଶ ପରିଷ୍କାର । କଳାଭ୍ରମର ପରି ପାଣି ଧାରଟି ପରେ ରୂପାଗୁଣ୍ଡ ବିଛା ବୁଣା ହେଲାପରି ବାଲି ଦଉ ଦାଉ ହସୁଛି । ସେତେବେଳେ ସେ ଅଞ୍ଚଳରେ ଭାରି ବାଡ଼ି ( ହଇଜା ) ପଡ଼ୁଥାଏ । ବଳପୁରରେ ବେଶୀ ଲାଗିଥାଏ । ଲୋକେ ମୂର୍ଦ୍ଦାର ପୋଡ଼ି ପାରୁ ନ ଥାନ୍ତି । କେହି କେହି ଶ୍ମଶାନରେ ଦରପୋଡ଼ା କରି ଛାଡ଼ିଯାଆନ୍ତି । ଅତି ଗରିବ ଲୋକେ ହୁଏତ ମୂର୍ଦ୍ଦାର ମୁହଁରେ ନିଆଁ ଦେଇ ଘରକୁ ଚାଲିଯାଆନ୍ତି । ଦୁର୍ଭିକ୍ଷ ବା ମଡ଼କ ପଡ଼ିଲେ ଅନେକ ଗ୍ରାମରେ ଏହିପରି ହୁଏ । ସେଦିନ ନଈ ବନ୍ଧ ଉପରେ ବରଗଛମୂଳ ଉଲଚଂଡୁଳିତ ଛାଇରେ ଗୋପବନ୍ଧୁ ଦାସଙ୍କୁ ଘେନି ଆମେ ଗୁରୁଜଣଯାକ

ଖଣ୍ଡିଏ ଦୋପଟା ଗୁଞ୍ଜ ପକାଇ ସନ୍ଧ୍ୟାପରେ ସେଇ ବରଗଛମୂଳେ ବସିଲୁ । ଆରପାଖରେ ବାଲୁଆଧାରୁ କଳିକର ଦରପୋଡ଼ା ମଡ଼ା ଟେଁଟାଉଥାନ୍ତି । ମୁର୍ଦ୍ଦାରଙ୍କ କେଂଟକେଲ୍ ( Coffin )ର କନା କତରା ସବୁ ପଡ଼ିଥିବାର ଦିଶୁଥାଏ । ଆମର ଗପ ଚାଲିଲା । ଗୋପବନ୍ଧୁ ଦାଶଙ୍କ ପରି ଗଳ୍ପ କରି ଭୁଲାଇବା ଲୋକ ବଡ଼ କମ୍ ଅଛନ୍ତି । ବିଶେଷରେ ଆମେ ପିଲା । ସେ ରାତ୍ରି ଗଳ୍ପର ଶବ୍ଦସବୁ ପ୍ରାଣରେ ଆଙ୍କି ହୋଇଗଲା । ଚନ୍ଦ୍ର ବୁଡ଼ିଗଲେ । ରାତି ବି ସକାଳ ହୋଇ ଆସିଲା । ଆମେ ତନ୍ମୟ । ଶେଷକୁ ଠିକ୍ ହେଲା— ଆମେ ପାଠ ପଢ଼ି ସରକାରୀ ଚାକରୀ କରିବା ନାହିଁ । ଦେଶ ପାଇଁ କାମ କରିବା । ଜନ୍ମବେଳେ ଦେଶକୁ ଯାହା ଦେଖିଥାଉଁ ତା'ଠାରୁ ଉନ୍ନତ ଦେଖି ମରିବା ।"

ହରିହର ତାଙ୍କର ଆତ୍ମୀୟ ବନ୍ଧୁମାନଙ୍କୁ ବେଳେବେଳେ କହୁଥାନ୍ତି, "ମିଥ୍ୟା ନ କହି ମଧ୍ୟ ଲୋକେ ଅନେକ ସମୟରେ ମିଥ୍ୟା ଆଚରଣ କରନ୍ତି । ସଂକଳ୍ପରୁ ବିଚ୍ୟୁତ ହୋଇ ନିଜର ସର୍ବନାଶ ସାଧନ କରନ୍ତି । ଭାର୍ଗବୀ ନଦୀକୂଳରେ ଦଳବଦ୍ଧ ସଂକଳ୍ପ ମୂଳରେ ଗୋଟିଏ କଥା ଉପରେ ସେତେବେଳେ ଜୋର ଦିଆଯାଇଥିଲା । ତାହା ହେଉଛି, ଆମେ ପାଠ ପଢ଼ି ସରକାରୀ ଚାକରୀ କରିବା ନାହିଁ ।" ଶ୍ରୀ ବିନୋଦ କାନୁନ୍‌ଗୋ ଏ ସମ୍ପର୍କରେ ଲେଖିଛନ୍ତି, "ଏହି ସଂକଳ୍ପ ପରେ ଆଚାର୍ଯ୍ୟ ହରିହର ପ୍ରାୟ ସାତ ଦଶନ୍ଧି ଏ ସଂସାରରେ ବଞ୍ଚିକରି ଅଛନ୍ତି । ଆମେ ତାଙ୍କର ଦୀର୍ଘ ଜୀବନ କାଳକୁ ସମାଲୋଚକ ଦୃଷ୍ଟିରେ ଦେଖିଲେ ଜଣାପଡ଼ିବ, ଥରେ ମାତ୍ର ଏହି ସଂକଳ୍ପରୁ ସେ ଟିକିଏ ବିଚ୍ୟୁତ ହୋଇଅଛନ୍ତି । ଯେତେବେଳେ ସେ ପୁରୀ ଜିଲ୍ଲା ସ୍କୁଲରେ ଶିକ୍ଷକତା କରିଥିଲେ, କିନ୍ତୁ ତାଙ୍କର ମନେ ପଡ଼ିଗଲା ଭାର୍ଗବୀକୂଳର ସେହି ସଂକଳ୍ପ କଥା । ସାଙ୍ଗେ ସାଙ୍ଗେ ସେ ସରକାରୀ ଚାକରୀ ଛାଡ଼ିଦେଲେ ।" ପୁଣ୍ୟ ଭାର୍ଗବୀ ନଦୀକୂଳର ଏହି ସଂକଳ୍ପ ବାଣୀ ସ୍ମରଣ କଲେ, ଆମ୍ଭମାନଙ୍କର ଦେହ ଶୀତେଇ ଉଠେ, ରୋମ ଟାଙ୍କୁରି ଉଠେ, ଓ ମନପ୍ରାଣ ନାନା ସନ୍ଦେହରେ ଆନ୍ଦୋଳିତ ହୁଏ । ଏଣେତେଣେ ବନ୍ଧନର ହରିଣପରି ଧାଉଁଥିବା ଇଚ୍ଛାକୁ ଦମନକରି, ଉପନିଷଦର ସେହି ମର୍ମସ୍ପର୍ଶୀ ବାଣୀ ଆମ୍ଭମାନଙ୍କର ହୃଦୟକ୍ଷେତ୍ରକୁ

ପ୍ରତିଧ୍ୱନିତ କରି ସେପରି କହେ, 'ତଦେତତ୍ ତ୍ରୟଂ ଶିକ୍ଷେତ୍' ଦମଂ ଦାନଂ ଦୟା ମିତି । ଅର୍ଥାତ୍ ଦମନ କର, ଦାନ କର, ଦୟାକର ।

ଆଚାର୍ଯ୍ୟ ହରିହରଙ୍କର ଜୀବନର ବ୍ରତ ହେଉଛି ଜନସେବା । ତାହାଙ୍କୁ ଜଣେ ଲେଖକ ଶାନ୍ତିନିକେତନର ଅଧ୍ୟାପକ ଦୀନବନ୍ଧୁ Andrews ଙ୍କ ସହିତ ତୁଳନା କରି ଗୋଟିଏ ପ୍ରବନ୍ଧ ଲେଖିଥିଲେ । କିନ୍ତୁ ତାଙ୍କୁ ଜଣାଥିଲା କି ନାହିଁ, ଏହି ଦୀନବନ୍ଧୁ Andrews ଙ୍କର ଆଚାର୍ଯ୍ୟ ହରିହରଙ୍କର ଜନସେବା ରୂପକ ମନ୍ତ୍ର ଗୁରୁ ଗୋପବନ୍ଧୁଙ୍କ ସହିତ ପରମ ସୌହାର୍ଦ୍ଦ୍ୟ ଥିଲା । ସେହି ସୂତ୍ରରେ ସେ ହୁଏତ ଆଚାର୍ଯ୍ୟ ହରିହରଙ୍କୁ Andrews ଙ୍କ ସହିତ ତୁଳନା କରି ଏକ ବିରାଟ ସାମଞ୍ଜସ୍ୟ ଉପସ୍ଥାପନ କରିଅଛନ୍ତି । କିନ୍ତୁ ଘୋର ବର୍ଷା କାଳରେ ଗୋପବନ୍ଧୁ Andrews ଙ୍କ ସହିତ ଭାର୍ଗବୀ ନଦୀ କୂଳରେ ଥିବା ବନ୍ୟାଗ୍ରସ୍ତ ଗ୍ରାମମାନ ବୁଲିସାରି ସେହିଦିନ ରାତିରେ ସତ୍ୟବାଦୀ ବିଦ୍ୟାଳୟର କୋଠା ଘରେ ଦୁଇଜଣଯାକ ଏକତ୍ର ଭୋଜନ ଓ ଶୟନ କରି ପ୍ରାତଃକାଳରେ ଶଯ୍ୟାରୁ ଉଠି ଯେତେବେଳେ Andrews କହନ୍ତି, "ଗୋପବନ୍ଧୁ, your pity for the poor is beautiful. May God protect these poor flood stricken people of Orissa" ସେତେବେଳେ ଗୋପବନ୍ଧୁଙ୍କ ନୟନରୁ ଧାରି ଧାରି ହୋଇ ଅଶ୍ରୁ ପ୍ରବାହିତ ହେଉଥାଏ । ସେତେବେଳେ ଅବଶ୍ୟ ଆଚାର୍ଯ୍ୟ ପ୍ରତ୍ୟକ୍ଷଭାବରେ ତାଙ୍କ ପାଖରେ ନ ଥିଲେ । Andrews ଙ୍କ ସେହି ପ୍ରାର୍ଥନାର ହୃଦୟସ୍ପର୍ଶୀ ବାଣୀ ଆଚାର୍ଯ୍ୟ ବୋଧହୁଏ ଶୁଣି ନ ଥିଲେ । କିନ୍ତୁ ସମଧର୍ମୀ Andrews ଙ୍କର ପ୍ରାର୍ଥନା ହରିହରଙ୍କର ହୃଦୟରେ ପରେ ପ୍ରତିଧ୍ୱନିତ ହୋଇଥିଲା ।

ଦରିଦ୍ରନାରାୟଣଙ୍କର ପୂଜାରୀ ଗୋପବନ୍ଧୁ ଓ ଦୀନବନ୍ଧୁ Andrews ଙ୍କ ସହିତ ଆଚାର୍ଯ୍ୟଙ୍କ ଜୀବନପ୍ରଣାଳୀ ଓତପ୍ରୋତ ଭାବରେ ଜଡ଼ିତ । ଆଚାର୍ଯ୍ୟଙ୍କର ଗୌରବର୍ଣ୍ଣ ଦେହ ସାମାନ୍ୟଭାବରେ ହେଲେ ମଧ୍ୟ Andrews ଙ୍କ ପରି ଦେଖା ଯାଉଥିଲା । ଆଚାର୍ଯ୍ୟଙ୍କ ସହିତ Mother Theresa ମଧ୍ୟ ତୁଳନୀୟା । ସେ ଏହି ବର୍ଷ ଦରିଦ୍ର ଓ

ଅନାଥ ମାନଙ୍କର ସେବା କରିବା ନିମନ୍ତେ ପୃଥିବୀର ସର୍ବଶ୍ରେଷ୍ଠ ପୁରସ୍କାର Nobel prize ଲାଭ କରିଅଛନ୍ତି । ଆଚାର୍ଯ୍ୟ ହରିହର, ମହାତ୍ମା ଗାନ୍ଧୀଙ୍କ ପରି ଦରିଦ୍ର ଓ କୁଷ୍ଠ ରୋଗୀମାନଙ୍କର ସେବା ଓ ପରିଚର୍ଯ୍ୟାରେ ଜୀବନ ଉତ୍ସର୍ଗ କରିଥିଲାପରି ଜଣାଯାଏ ।

"୧୯୩୪ ମସିହାରେ ଢେଙ୍କାନାଳରେ ଗାନ୍ଧୀ ସେବାସଂଘର ବିପୁଳ ଆୟୋଜନ ପାଇଁ ଗାନ୍ଧିଜୀ 'ହରିଜନରେ' ଗୋପବନ୍ଧୁ ଚୌଧୁରୀଙ୍କୁ ଧନ୍ୟବାଦ ଦେଇ ଲେଖିଥିଲେ; ମାତ୍ର ଗୋପବନ୍ଧୁ ଏହାର ସଙ୍ଗେ ସଙ୍ଗେ ପ୍ରତିବାଦ ଜଣାଇ ଲେଖିଥିଲେ, "ବାସ୍ତବରେ ଆଚାର୍ଯ୍ୟ ହରିହର ଏବଂ ପଣ୍ଡିତ କୃପାସିନ୍ଧୁ ହୋତା ହିଁ ଏହି ସବୁ ଆୟୋଜନ ପାଇଁ ପ୍ରଶଂସା-ଯୋଗ୍ୟ ।" ଏହି ସମ୍ମିଳନୀ ସମୟରେ ହଠାତ ଗାନ୍ଧିଜୀଙ୍କର ହାତବାଡ଼ିଟି ହଜିଯିବାରୁ ଆଚାର୍ଯ୍ୟ ମହାଶୟ ନିଜେ ଧରିଥିବା ବାଉଁଶ ବାଡ଼ିଖଣ୍ଡି ତାଙ୍କୁ ଦେଇଥିଲେ । ବହୁବର୍ଷ ପର୍ଯ୍ୟନ୍ତ ଗାନ୍ଧିଜୀ ଏହି ବାଡ଼ିଟି ଓଡ଼ିଶାର ସ୍ମୃତିଭାବେ ଆପଣା ପାଖରେ ରଖିଥିଲେ । ଓଡ଼ିଶାରୁ ସେ ଯାଉଥିଲେ ଏହି ବାଡ଼ିଟି ଦେଖାଇ ଓଡ଼ିଶା କଥା ଭୁଲିବା ତାଙ୍କ ପକ୍ଷରେ ସମ୍ଭବ ନୁହେଁ ବୋଲି ସେ କହୁଥିଲେ ।" (ଦେଶାତ୍ମବୋଧ ଓ ଜନସେବାର ପ୍ରତୀକ' ଶ୍ରୀ ଚନ୍ଦ୍ରଶେଖର ମହାପାତ୍ର ) । ତାଙ୍କର ୯୪ଶ ଶୁଭ ଜନ୍ମ ଦିବସ ଉପଲକ୍ଷେ ପ୍ରକାଶିତ 'ସ୍ମରଣିକା' ପତ୍ରିକାରେ ମହାତ୍ମାଗାନ୍ଧୀ ଗୋଟିଏ ପତ୍ର ଏହି ପତ୍ରିକାକୁ ଦେଇଥିଲେ । ସେହି ପତ୍ରର ସାରମର୍ମ ହେଉଛି "୧୯୪୦ ମସିହାରେ ଆଚାର୍ଯ୍ୟ ହରିହରଙ୍କ ୬୦ଶ ଜନ୍ମ ଦିବସ ଉପଲକ୍ଷେ ତାଙ୍କୁ ଓଡ଼ିଶା-ବାସୀଙ୍କ ପକ୍ଷରୁ ଜନସେବାରେ ବିନିଯୋଗ ପାଇଁ ୫୦୦୦ ଟଙ୍କାର ଏକ ଥଳି ଅର୍ପଣ କରାଯାଇଥିଲା । ସେ ଆମ୍ଭମାନଙ୍କ ମଧ୍ୟରେ ଥିବା ତ୍ୟାଗନିଷ୍ଠ କର୍ମୀମାନଙ୍କ ମଧ୍ୟରୁ ଜଣେ । ଏହି ଥଳୀ ଦେବା ସମୟରେ ମୋର ସେଠାରେ ଉପସ୍ଥିତ ଥିବାର ବଡ଼ ଇଚ୍ଛା ଥିଲା । ଭଗବାନଙ୍କ କୃପାରୁ ସେ ଦୀର୍ଘାୟୁ ହୁଅନ୍ତୁ ।" ମହାତ୍ମାଗାନ୍ଧୀ ଏହି ଚିଠିଟି ଶାନ୍ତିନିକେତନରୁ ୧୮ । ୨ । ୧୯୪୦ ମସିହାରେ ଡକ୍ଟର ହରେକୃଷ୍ଣ ମହତାବଙ୍କ ପାଖକୁ ଲେଖିଥିଲେ ।

ତାଙ୍କର କଟକରେ ଗୋପବନ୍ଧୁ ଓ ନୀଳକଣ୍ଠଙ୍କ ସହିତ କଲେଜ ଛାତ୍ରାବାସରେ ରହୁଥିବା କଥା ମୁଁ ଉଲ୍ଲେଖ କରୁଥିଲି । ନୀଳକଣ୍ଠ ତାଙ୍କ ଆତ୍ମଜୀବନୀରେ ଲେଖିଅଛନ୍ତି, 'ଥରେ କଟକରେ ସେ ହଇଜା ରୋଗରେ ଆକ୍ରାନ୍ତ ହୋଇପଡ଼ିଲେ ପାଖରେ ସେତେବେଳେ ଆଉ କେହି ନ ଥିଲେ । କେବଳ ହରିହରଭାଇନା ଥାନ୍ତି । ତାଙ୍କର ସେବାଶୁଶ୍ରୂଷା ଏବଂ ମଳମୂତ୍ର ଇତ୍ୟାଦି ପରିଷ୍କାର କରିବା ନିମନ୍ତେ ସେହି ହରିଭାଇନା ଥିଲେ ତାଙ୍କର ଏକମାତ୍ର ଜାଗ୍ରତ ପ୍ରହରୀ । ନୀଳକଣ୍ଠ ଲେଖି ଅଛନ୍ତି, ମୋର ଅବସ୍ଥା ସେତେବେଳେ ଶୋଚନୀୟ । ମୁଁ ମରିବି କି ବଞ୍ଚିବି ଏହି ସନ୍ଧିକ୍ଷଣରେ ଥାଏ । ଆଖି ଫିଟାଇ ଦେଖିଲି, ହରିଭାଇନାଙ୍କ ଆଖିରୁ ଧାର ଧାର ହୋଇ ଲୁହ ବୋହିଯାଉଛି । ଏହି କଥା ଦେଖି ମୁମୂର୍ଷୁ ପ୍ରାଣରେ କିଛି ସାହସ ଜନ୍ମିଲା ଏବଂ ପରେ ହୋମିଓ ପାଥିକ୍ ଔଷଧ ଖାଇ ମୁଁ ବଞ୍ଚିଗଲି ।'

ଗୋପବନ୍ଧୁଙ୍କ ପରି ନୀଳକଣ୍ଠ ଓ ହରିହର ଏହି ଆଦର୍ଶରେ ଅନୁପ୍ରାଣିତ ହୋଇ ଜନସେବାରେ ଆତ୍ମୋତ୍ସର୍ଗ କରିଥିଲେ । ଏହି ଆତ୍ମୋତ୍ସର୍ଗର ଇତିହାସ ହରିହରଙ୍କ ଜୀବନରେ ଗୋଟିଏ ସାଧାରଣ ଘଟଣା ହୋଇ ତାଙ୍କର ମୃତ୍ୟୁ ପର୍ଯ୍ୟନ୍ତ ରହିଥିଲା ।

ନୀଳକଣ୍ଠ ମାଟ୍ରିକ୍ୟୁଲେସନ ଦ୍ୱିତୀୟ ଶ୍ରେଣୀରେ କଟକରେ ପଢ଼ିବା ଦିନଠାରୁ ଏହି ସେବାକାର୍ଯ୍ୟ ଆରମ୍ଭ କରିଥିଲେ । କଟକରେ ସେତେବେଳେ ଅନେକ ଓଡ଼ିଆ ମୂଳିଆଘର କାମକରି କୁଟୁମ୍ବ ପ୍ରତିପୋଷଣ କରୁଥିଲେ । ସେତେବେଳେ ସେମାନଙ୍କୁ ଅନେକ ସମୟରେ ହଇଜା ରୋଗ ଧରୁଥିଲା । ସେମାନଙ୍କର ସେବା କରିବା ନିମନ୍ତେ ଗୋପବନ୍ଧୁ ଗୋଟିଏ ଦଳ ଗଠନ କରିଥିଲେ । ସେହି ଦଳର ପ୍ରଧାନ ସଭ୍ୟ ଥିଲେ— ଗୋପବନ୍ଧୁ, ନୀଳକଣ୍ଠ, ହରିହର ଏବଂ ଗୁରୁଚରଣ ଅନନ୍ତ ମିଶ୍ର । ଏହି ଦଳ ମଧ୍ୟରୁ ପ୍ରହରୀ ପଦ ବଣ୍ଟାଗଲା । ସହରରେ ଯାହାର ଯେଉଁଠି ହଇଜା ହେବ ସେ ଆମକୁ ଖବର ଦେଲେ ଆମେ ଯାଇ ପହଞ୍ଚିବୁ । ଏହିପରି ଅନେକ ଲୋକ ଆମକୁ ଖବର ଦିଅନ୍ତି । ଆମେ ଯାଇ ସାଧାରଣତଃ ହଇଜା ରୋଗୀଙ୍କ ଘରେ ପହଞ୍ଚିବୁ ।'

କାଠଯୋଡ଼ି କୂଳରେ ଟ୍ରେନିଂ ପାଉଥିବା ଛାତ୍ରମାନଙ୍କର ଗୋଟିଏ ଛାତ୍ରାବାସ ଥାଏ । ସେଠାରେ ନେତ୍ରାନନ୍ଦ ବୋଲି ଜଣେ ଛାତ୍ର ଥରେ ହଇଜା ରେ ଆକ୍ରାନ୍ତ ହେଲା । ନୀଳକଣ୍ଠ ଏକଥା ଶୁଣି ଛାତ୍ରାବାସର ପରିଚାଳକ ସୁରେଶ ଗୁପ୍ତଙ୍କଠାରୁ ଅନୁମତି ନ ଆଣି ସାଙ୍ଗେ ସାଙ୍ଗେ ରୋଗୀ ପାଖକୁ ଚାଲିଗଲେ । ରୋଗୀର ମଳମୂତ୍ର ପରିଷ୍କାର କରି ହାତକୁ ପଟାସ୍ ପରମାଙ୍ଗାନେଟ୍ ପାଣିରେ ଧୋଇଥିବାରୁ ହାତଯୋଡ଼ିକ ତାଙ୍କର ଲାଲ ହୋଇଯାଇଥାଏ । ସୁରେଶ ବାବୁ ଏକଥା ଶୁଣି ନୀଳକଣ୍ଠଙ୍କୁ ପ୍ରିନ୍ସିପାଲ୍ ବି. ଭି. ଗୁପ୍ତଙ୍କ ପାଖକୁ ନିବାକୁ ଗୋଟିଏ ଚପରାସିକୁ ଆଦେଶ ଦେଲେ । ଏ ସମ୍ପର୍କରେ ନୀଳକଣ୍ଠ ନିଜେ ଲେଖିଛନ୍ତି, "ମୁଁ ସଙ୍ଗେ ସଙ୍ଗେ ପ୍ରିନ୍ସିପାଲଙ୍କ ପାଖକୁ ଦୌଡ଼ାଲିକୁ ଚାଲିଆସି କହିଲି, ଆପଣ ମୋତେ ଅନୁଗ୍ରହ କରି ଛାଡ଼ିଦିଅନ୍ତୁ । ମୋତେ ବି. ଭି. ଗୁପ୍ତ ନିରେଖି ଚାହିଁଲେ । କ'ଣ ମନକୁ ପାଇଲା, ତାପରେ କହିଲେ, "ହଉ ଯାଅ ।" କିନ୍ତୁ ରୋଗୀଟି ସେହିଦିନ ସନ୍ଧ୍ୟାବେଳକୁ ମରିଗଲା ।"

ହରିଭାଇନା କେଉଁଠାରେ ଥିଲେ କେଜାଣି, ଏହି ସମୟରେ ଫେରିଆସି ନୀଳକଣ୍ଠର ହାତ ଦିଇଟା ଲାଲ ହୋଇଯାଇଥିବାର ଦେଖି ସେ ସକାଳୁ ଗାଧୋଇସାରି କିଛି ନ ଖାଇ ମଠା ପିନ୍ଧି ହଇଜାରୋଗୀର ସେବା କରୁଥିବାର ଜାଣିପାରି ଅତ୍ୟନ୍ତ ମର୍ମାହତ ହେଲେ । କହିଲେ, "ଆରେ ନୀଳୁ, ମୋତେ ଟିକିଏ ଖବର ଦିଅନ୍ତୁ ନାହିଁ, କିଛି ନ ଖାଇ ନ ପିଇ ହଇଜା ରୋଗୀର ସେବା କରନ୍ତୁ ? ତୋର ପ୍ରିନ୍ସିପାଲଙ୍କୁ ଟିକିଏ ମାତ୍ର ଭୟ ନାହିଁ । ତାଙ୍କୁ ପୁଣି କହିଲୁ—ମୋତେ ଟିକିଏ ଛାଡ଼ିଦିଅନ୍ତୁ । ରୋଗୀ ପାଖରେ କେହି ନାହିଁ । ଧନ୍ୟ ତୋର ସାହସ । ଯାହା ହେଉ, ଏଥିରେ ତତେ କିଏ ବାଧା ଦେବ ?" ଗୋପବନ୍ଧୁ ହରିହରଙ୍କଠାରୁ ଏହିସବୁ ବୃତ୍ତାନ୍ତ ଶୁଣି ନୀରବ ନିଶ୍ଚଳ ହୋଇ ରହିଲେ ।

ଏହିପରି ଭାବରେ ହରିହର ଓ ତାଙ୍କ ଗୋଷ୍ଠୀର ଛାତ୍ରମାନଙ୍କର ଦରିଦ୍ରମାନଙ୍କ ପ୍ରତି ସ୍ନେହ ଓ ସହାନୁଭୂତି, ଶ୍ରଦ୍ଧା ଓ ସେବାପରାୟଣତାର ବୀଜ କ୍ରମେ ଅଙ୍କୁରିତ ହେଲା । ଏହା ଲେଖିଲାବେଳେ ଉପସ୍ଥିତ ଲେଖକର

ରୁଷିଆର ସୃଷ୍ଟି ଓ ଆଦର୍ଶ ଲେଖକ ଓ ଟଲ୍‌ଷ୍ଟୟଙ୍କର ଗୋଟିଏ ଗଳ୍ପର କାହାଣୀ ମନେପଡ଼େ । ସେହି ଗଳ୍ପରେ ଯୀଶୁଖ୍ରୀଷ୍ଟ କହୁଛନ୍ତି, "ମୁଁ କ୍ଷୁଧିତ ଥିଲି, ତୁମେ ମୋତେ ଖାଦ୍ୟ ଦେଲ, ମୁଁ ତୃଷାର୍ତ୍ତ ଥିଲି, ତୁମେ ମୋତେ ପିଇବାକୁ ପାଣି ଦେଲ, ମୁଁ ତୁମର ଅପରିଚିତ ଥିଲି, ତଥାପି ତୁମେ ମୋତେ ତୁମର ଘର ଭିତରକୁ ଡାକି ଆଣିଲ । ଜଣେ ନଗଣ୍ୟ ମନୁଷ୍ୟ ନିମନ୍ତେ ଯଦି ତୁମେ ଏହା କରିଥାଅ, ତେବେ ତୁମେ ତାହା ମୋ ନିମନ୍ତେ କରିଅଛ ।" ସମଗ୍ର ଖ୍ରୀଷ୍ଟିଆନ୍ ଜଗତର ଧର୍ମଗ୍ରନ୍ଥ Bible ସେଥିପାଇଁ ଗାନ୍ଧିଜୀଙ୍କର ଅତି ପ୍ରିୟତମ ଧର୍ମଗ୍ରନ୍ଥ । ଯେଉଁଠାରେ ପ୍ରେମ, ସେହିଠାରେ ହିଁ ଭଗବାନ ବିଦ୍ୟମାନ । ମହାତ୍ମାଗାନ୍ଧିଙ୍କ ମୁଖରୁ ଏହି ଉଦାର ବାଣୀ ଜନସେବକ ଗୋପବନ୍ଧୁ ଓ ହରିହରଙ୍କର ଆତ୍ମାକୁ ଘନ ଘନ ଆନ୍ଦୋଳିତ କରିଥିଲା ।

କଟକରେ ବି. ଏ. ପଢ଼ିବା ସମୟରେ ଗୋପବନ୍ଧୁ, ନୀଳକଣ୍ଠ, ହରିହର ଓ ଗୋଦାବରୀଶ ପ୍ରଭୃତିଙ୍କୁ ସଙ୍ଗରେ ନେଇ ବନ୍ୟା ଓ ଦୁର୍ଭିକ୍ଷ ପ୍ରପୀଡ଼ିତ ଅଞ୍ଚଳର ଲୋକ ମାନଙ୍କର ଦୁଃଖ ଓ ଦୁର୍ଦ୍ଦଶା ଦୂର କରିବା ନିମନ୍ତେ "Young utkal Association" ଗଠନ କରି ଏହି ଉତ୍ସାହୀ ଯୁବକମାନଙ୍କ ସହିତ କେନ୍ଦ୍ରାପଡ଼ାରେ ଯାଇ ପହଞ୍ଚିଲେ । ସେଦିନ ଭୟଙ୍କର ବର୍ଷାର ବିରାମ ନାହିଁ, କି ସ୍ୱେଚ୍ଛାସେବକମାନଙ୍କ ମୁଣ୍ଡରେ ଛତା ନାହିଁ । ହୁଏତ ଗତ ରାତିରୁ ସେମାନେ କିଛି ଖାଇଛନ୍ତି କି ନାହିଁ ସନ୍ଦେହ । ଏହିପରି ଭୋକ ଉପାସରେ ବର୍ଷାରେ ସମ୍ପୂର୍ଣ୍ଣରୂପେ ଓଦାହୋଇ ସେମାନେ ଯେତେବେଳେ ଯାଇ ପହଞ୍ଚିଛନ୍ତି, କେନ୍ଦ୍ରାପଡ଼ା ହାଇସ୍କୁଲରେ ସେତେବେଳେ ଜଣେ ମୁସଲମାନ ହେଡ଼୍‌ମାଷ୍ଟର ତାଙ୍କ ପ୍ରକୋଷ୍ଠରେ ଗମ୍ଭୀର ଭାବରେ ବସିଅଛନ୍ତି । ଗୋପବନ୍ଧୁ ବନ୍ୟାକ୍ଲିଷ୍ଟ ବିପନ୍ନ ଲୋକ-ମାନଙ୍କର ଅସହ୍ୟ ଦୁଃଖରେ ବ୍ୟଥିତ । ଆଖିରୁ ଧାର ଧାର ହୋଇ ଲୁହ ବହିଯାଉଛି । ସେ ବାଷ୍ପରୁଦ୍ଧ କଣ୍ଠରେ ହେଡ଼୍‌ମାଷ୍ଟରଙ୍କୁ କହିଲେ, "ଆପଣ କେତେଜଣ ସ୍ୱେଚ୍ଛାସେବକ ଆମକୁ ଯୋଗାଇ ଦିଅନ୍ତୁ । ଆମେ ଯେତେ ଶୀଘ୍ର ପାରୁ ସେତେ ଶୀଘ୍ର ଗୋବରୀ ନଈ ପାରହୋଇ ଆରକୂଳକୁ ଯିବୁ ।

ଘାଣ୍ଡି ଯେଉଁଠାରେ ଭାଙ୍ଗିଥିବ ତାହାର ପାଖ ଆଖ ଲୋକେ କପରି ଅଛନ୍ତି ତାହା ନିଜ ଆଖିରେ ଦେଖି ଆସିବୁ । ବଦାନ୍ୟ ବ୍ୟକ୍ତି ମାନଙ୍କ-ଠାରୁ ଯେଉଁ ଚୂଡ଼ା ଓ ଗୁଡ଼ଲ ଭିକ୍ଷା କରି ଆଣିଛୁ, ତାହା ମଧ୍ୟ ସାଙ୍ଗରେ ନେବୁ ।" ହେଡ୍‌ମାଷ୍ଟର କ୍ରୋଧରେ ଜର୍ଜରିତ ହୋଇ ଗୋପବନ୍ଧୁଙ୍କୁ କହିଲେ, "ନା, ନା, ସେ କଥା ହୋଇପାରିବ ନାହିଁ । ପିଲାଙ୍କୁ ଏପରି ଉଚ୍ଛୃଙ୍ଖଳ ହେବାକୁ ମୁଁ ଦେବି ନାହିଁ । ଆପଣ ଯେମିତି ଇଚ୍ଛା ସେମିତି ଯାଇପାରନ୍ତି । ଆମର ଏହି ବନ୍ୟା ସହିତ କି ସମ୍ପର୍କ ?" ତେଣୁ ଗୋପବନ୍ଧୁ ନିରାଶ ହୋଇ ବାରଣ୍ଡାରେ ଠିଆ ହୋଇଥିବା ଗୋଦା-ବରୀଶଙ୍କୁ କହିଲେ, "ଗୋଦାବରୀଶ, ତୁମେ ପରା ଇଂରେଜୀରେ ଭଲ ବକ୍ତୃତା ଝାଡ଼ିପାର । ପିଲାମାନଙ୍କୁ ଡକାଇ ଗୋଟିଏ ସଭାର ଆୟୋଜନ କରି, ବନ୍ୟାଗ୍ରସ୍ତ ଅଞ୍ଚଳର ଦୁଃଖ ଓ ଦୁର୍ଦ୍ଦଶା ଯଦି ସେମାନଙ୍କ ଆଗରେ ଝାଡ଼ିଦିଅନ୍ତ ତେବେ ଏ ହେଡ୍‌ମାଷ୍ଟରର ଚେତା ପଶନ୍ତା ।" ଗୋଦାବରୀଶ ଗୋପବନ୍ଧୁଙ୍କଠାରୁ ଏହି କଥା ଶୁଣି ପିଲାମାନଙ୍କୁ ଡକାଇ ହେଡ୍‌ମାଷ୍ଟରଙ୍କ ଅଜ୍ଞାତରେ ଗୋଟିଏ ଛାତ୍ରସଭା ଡକାଇଲେ ।

ଏହି ଛାତ୍ରସଭାରେ ଅନ୍ୟାନ୍ୟ ସ୍ୱେଚ୍ଛାସେବକମାନଙ୍କ ସହିତ ହରିବାବୁ ମଧ୍ୟ ଉପସ୍ଥିତ ଥିଲେ । ସେ ଭାବୁଥାନ୍ତି, "ହେଡ୍‌ମାଷ୍ଟରଙ୍କ ବିନା ଅନୁମତିରେ ସ୍କୁଲରେ ଏପରି ଗୋଟିଏ ସଭା କରିବା ଉଚିତ ହେଉନାହିଁ । କିନ୍ତୁ ତାଙ୍କର ଏହି ଭାବନାକୁ ସେ ଗୋପବନ୍ଧୁଙ୍କ ଆଗରେ ପ୍ରକାଶ କରିବା ପୂର୍ବରୁ ଗୋଦାବରୀଶ ଛାତ୍ରମାନଙ୍କୁ ତାଙ୍କର ଓଜସ୍ୱିନୀ ଭାଷାରେ କହୁଥାନ୍ତି, "Come-on boys, This is country's work. This is the time, and this is the place" ଏତିକି ଶୁଣି ୮, ୧୦ ଜଣ ଛାତ୍ର ଠିଆହୋଇ କହିଲେ, "ହଁ, ସାର୍, ଆମ୍ଭେମାନେ ଯିବାକୁ ପ୍ରସ୍ତୁତ ଅଛୁ । ଆମେ ଦେଖୁଛୁ, ଆପଣମାନେ ଏତେ କଷ୍ଟ ସହି ନ ଖାଇ ନ ପିଇ ଆମ ପାଖକୁ କଟକରୁ ଚାଲି ଚାଲି ଆସିଛନ୍ତି, ଆମେ ଆପଣମାନଙ୍କୁ ନିରାଶାରେ ଫେରାଇ ଦେବୁ ନାହିଁ ।"

ଛାତ୍ରମାନେ ଗୋପବନ୍ଧୁଙ୍କ ସହ ବନ୍ୟାପୀଡ଼ିତ ଅଞ୍ଚଳକୁ ନାଆରେ ବସି ବାହାରିଲେ । ହରିବାବୁ ତାଙ୍କ ପାଖେ ପାଖେ ବସିଥା'ନ୍ତି । ଛାତ୍ର-ମାନଙ୍କୁ ବୁଝାଉଥା'ନ୍ତି, "ଏ କେଡ଼େ ମହତ୍ କର୍ମ । ଏଥିରେ ବିପଦ ପଦେ ପଦେ । ଏହି କଥା ମନେରଖି ତୁମ୍ଭେମାନେ ଦେଶ କାମ କରିବ । ଯଦି ସଂଯତ ଓ ଚରିତ୍ରବାନ ହୋଇ ଦେଶର ସେବାରେ ମନପ୍ରାଣ ଉତ୍ସର୍ଗ କରିବ, ତେବେ ଦେଶ ଓ ଜାତିର ଗୌରବ ତୁମରି ହାତରେ ।"

ହରିହର ପୁରୀରେ ପଢୁ ଥିଲାବେଳେ ତାଙ୍କ ମାମୁଁ ଅଜା 'ହରିହର ମିଶ୍ରଙ୍କଠାରୁ ଶୁଣିଥିଲେ—ହରି ତୁ ବଡ଼ହେଲେ ଗୋଟେ ଓକିଲ ହେବୁ । ଓକିଲମାନଙ୍କର କେତେକେତେ ଟଙ୍କା ଉପାର୍ଜନ ତୁ ଏ ଜାଣୁ ? ମାମୁଁ ଅଜା ନିଜେ ଜଣେ ଓକିଲ ଥିଲେ । ହରିହର ନିଜେ ମଧ୍ୟ ଲକ୍ଷ୍ୟ କରୁଥିଲେ ଓକିଲମାନଙ୍କର ଚାଲିଚଳନ ଓ ଢଙ୍ଗ । ଓକିଲ ହେବା'କୁ ତାଙ୍କର ମନ ଟିକିଏ ଡ଼ିଳିପଡ଼ିଲା । ନନା ମହାଦେବ ବ୍ରହ୍ମା ମଧ୍ୟ ହରି କିପରି ବଡ଼ ହେଲେ ଜଣେ ଓକିଲ ହେବ, ଏହି ପ୍ରକାର କଳ୍ପନା କରୁଥାନ୍ତି । ହରିଙ୍କି ମଧ୍ୟ ସେ ସ୍ପଷ୍ଟ ଭାବରେ ଦୁଇଗୁରି ଥର କହିଥିଲେ । ହରି ଏଫ. ଏ. ପାଶ୍ କରି P. L. ପଢ଼ିଲେ । କିନ୍ତୁ ଯାର ଜୀବନ ଶିକ୍ଷକ ହୋଇ ଜନତା ଜନାର୍ଦ୍ଦନର ସେବାକରିବା ଯାହାଙ୍କର ଜୀବନର ବ୍ରତ ବୋଲି ଭଗବାନ ମନୁଷ୍ୟର ଭାଗ୍ୟ ବିଧାତା ହୋଇ କଠୋର ନିର୍ଦ୍ଦେଶ ଦେଇଅଛନ୍ତି, ସେ କିପରି ବା ସେ ନିର୍ଦ୍ଦେଶରୁ ସ୍ଖଳିତ ହେବେ ? କଟକରେ P. L. କ୍ଲାସରେ ନାମ ଲେଖାଇଲେ ସତ କିନ୍ତୁ ପଢ଼ିବାରେ ମନ ଲାଗିଲା ନାହିଁ ।

ପରୀକ୍ଷାରେ ଭଲ କରିବା ନିମନ୍ତେ ସେ କଲିକତା ଗଲେ । କିନ୍ତୁ ମନକୁ ଯେତେ ବୁଝାଇଲେ ମଧ୍ୟ ଓକିଲ ହେବାକୁ ତାଙ୍କର ମୋଟେ ଇଚ୍ଛା ହେଉ ନ ଥା'ଏ । ତେଣୁ ଶେଷ ପରୀକ୍ଷା ନ ଦେଇ ସେ କଟକରୁ ଫେରି ଆସି ଅଳ୍ପଦିନ ମଧ୍ୟରେ ପୁରୀ ଜିଲ୍ଲା ସ୍କୁଲର ଶିକ୍ଷକ ହେଲେ ।

ଗୋପବନ୍ଧୁଙ୍କ ଅଦ୍ଭୁତ ସ୍ୱର୍ଗୀୟ ନଧାକୂଳରେ ସରକାରୀ ଚାକିରୀ କରିବେ'ନାହିଁ ବୋଲି ଯେଉଁ ଦୃଢ଼ ସଂକଳ୍ପ କରିଥିଲେ, ସେହିକଥା ମନେ ପଡ଼ିଯିବାରୁ ହଠାତ୍ ଅଳ୍ପ କେତେଦିନ ମଧ୍ୟରେ ପୁରୀ ଜିଲ୍ଲା ସ୍କୁଲରୁ ବିଦାୟ ନେଲେ ।

ଶ୍ରୀ ବିନୋଦ କାନୁନ୍‌ଗୋ ମହାଶୟ କହନ୍ତି,—"ପ୍ରକୃତ ଅର୍ଥରେ ସେ ଥିଲେ ସନ୍ନ୍ୟାସୀ" । କେତେବର୍ଷ ତଳେ ସେ ପଇତା ଛାଡ଼ିଦେଲେ । କେତେଙ୍କୁ ଟିକିଏ ଅଡ଼ୁଆ ଲାଗିଲା । ସେମାନଙ୍କୁ ଆଚାର୍ଯ୍ୟ ମହାଶୟ ବୁଝାଇଦେଲେ—"ମୁଁ ଅନୁଭବ କରୁଛି ମୋ ଭିତରେ ସବୁଜାତି ଅଛନ୍ତି । ମୁଁ ଗୋଟିଏ ଜାତି ଭିତରେ ବାନ୍ଧିହେବାଟା କ'ଣ ଠିକ୍ ହେବ ? ଅହଂଭାବରୁ ମୁଁ ମୁକ୍ତ ହେବାକୁ ଚାହେଁ । ଯେତେବେଳେ ପଇତାଟିକୁ ଦେଖୁଛି, ଅଲକ୍ଷ୍ୟରେ ମୋ ମନ ଭିତରେ ବେଳେ ବେଳେ ଭାବ ଜନ୍ମୁଛି ଯେ ମୁଁ ଟିକିଏ ଉଚ୍ଚ ଜାତିର ଲୋକ । ମୋର ଜୀବନ ସହିତ ଏହା ଖାପ ଖାଉ ନାହିଁ । କୌଣସି ଅହଂଭାବରୁ ନୁହେଁ, ମୋ ମନକୁ ଶାନ୍ତ ଦେବାପାଇଁ ଏପରି କରୁଛି ।"

# ଭଲ ମଣିଷ ହୁଅ

## ( ନୀଳଗିରି ଓ ପି. ଏମ୍. ଏକାଡେମୀରେ ଶିକ୍ଷକତା )

—୦—

ସେତେବେଳକୁ ଗଡ଼ଜାତ ସବୁ ମୋଗଲ ବନ୍ଧରେ ମିଶି ନ ଥାଏ । ଏହା ଭାରତ ୧୯୪୭ ମସିହାରେ ସ୍ୱାଧୀନତା ପାଇବାର ପୂର୍ବ କଥା । ଭାରତ ସ୍ୱାଧୀନ ହେଲାପରେ ଏ ଦେଶର ଉପ-ପ୍ରଧାନମନ୍ତ୍ରୀ ୰ ପଟେଲ ମହୋଦୟ ସ୍ୱାଧୀନ ଭାରତ ସହିତ ଏହି ଗଡ଼ଜାତ ମିଶ୍ରଣ କାର୍ଯ୍ୟର ସୂତ୍ରପାତ କଲେ । ଓଡ଼ିଶାକୁ ସେ ମଧ୍ୟ ଏହି ମିଶ୍ରଣ ସମ୍ପର୍କରେ ଥରେ ଆସିଥିଲେ । ଡକ୍ଟର ହରେକୃଷ୍ଣ ମହତାବ ଏହି ମିଶ୍ରଣ କାର୍ଯ୍ୟରେ ପଟେଲଙ୍କୁ ଯଥେଷ୍ଟ ସାହାଯ୍ୟ କରିଥିଲେ ।

ଗଡ଼ଜାତ ମିଶ୍ରଣ ପୂର୍ବରୁ ଢେଙ୍କାନାଳ, ଆଠଗଡ଼, ମୟୂରଭଞ୍ଜ ଓ ରେଢ଼ାଖୋଲ ପ୍ରଭୃତି ୨୪ ଗଡ଼ଜାତର ରାଜାମାନେ ନିଜ ରାଜ୍ୟର ନିରଙ୍କୁଶ ଶାସକରୂପେ ନିଜକୁ ଜ୍ଞାନ କରୁଥିଲେ । ରାଜ୍ୟରେ ନାନାପ୍ରକାର ଅତ୍ୟାଚାର, ଅପଚାର ଓ ବ୍ୟଭିଚାର ଚାଲିଥିଲା । ଅବଶ୍ୟ ଏମାନଙ୍କ ମଧ୍ୟରେ ବ୍ୟତିକ୍ରମ ଥିଲେ, ବାମଣ୍ଡାର ରାଜା ସୁଢ଼ଳଦେବ, ଓ ମୟୂର-ଭଞ୍ଜର ମହାରାଜା ଶ୍ରୀ ରାମଚନ୍ଦ୍ର ଭଞ୍ଜ । ଏମାନଙ୍କର ଓଡ଼ିଶା ପ୍ରଦେଶର ସାହିତ୍ୟ, ସଂସ୍କୃତି ଓ ହିତକର ଅନୁଷ୍ଠାନ ପ୍ରତି ଯଥେଷ୍ଟ ଅବଦାନ ଥିଲା । ଏମାନଙ୍କର ସର୍ବୋଚ୍ଚ କର୍ତ୍ତା ରହିଥାନ୍ତି ସମ୍ବଲପୁରରେ । ତାଙ୍କ ଉପାଧି ହେଉଛି—Political Agent of Orissa, fueudatory States. ସେତେବେଳେ ଏହି Agent ସାହେବ ବିଲାତରୁ ଆସୁଥିଲେ ।

୬ ବ୍ୟାସକବି ଫକୀର ମୋହନ ସେନାପତିଙ୍କ ଆତ୍ମଚରିତ ପାଠ କଲେ ଏହି ନରରୂପଧାରୀ ପିଶାଚମାନଙ୍କର କୀର୍ତ୍ତିକଳାପ ବେଶ୍ ଜଣାପଡ଼େ । ସେହି ସମୟରେ, ଅର୍ଥାତ୍ ଗୋପବନ୍ଧୁ ବାବୁ ଏ. ଏଲ୍. ପାସ୍ କଲାବେଳେ ବାଲେଶ୍ୱରର ନୀଳଗିରି ଗଡ଼ଜାତରେ ଲୋକେ ରାଜାଙ୍କଠାରୁ ପ୍ରବଳ ଅତ୍ୟାଚାର ସହି ପଡ଼ିଥାନ୍ତି । ମୁହଁ ଫିଟାଇ ପଦେ ଆପତ୍ତି ଅଭିଯୋଗ କାହା ଆଗରେ କରିବାର ଶକ୍ତି ଓ ସାହସ ନ ଥାଏ । ତା' ଉପରେ ଥାନ୍ତି Political Agent Cobden Ramsey । ସେ ଥାନ୍ତି ଅତ୍ୟାଚାରର ମୂର୍ତ୍ତିମନ୍ତ ପ୍ରତୀକ । ହାତରେ ବେତ ବାଡ଼ିଟିଏ ଧରି ସେ ଗଡ଼ଜାତକୁ ବୁଲିଆସିଲେ ରାଜାମାନଙ୍କର ପ୍ରାଣ ଆତଙ୍କରେ ଥରିଉଠେ, ସତେ ଯେପରି ଯମଦେବତା ଆସି ତାଙ୍କ ପାଖରେ ପହଞ୍ଚି-ଗଲେ । ଶୁଣାଯାଏ ସେ କୌଣସି କୌଣସି ଗଡ଼ଜାତର ରାଜାଙ୍କୁ ବେତରେ ପ୍ରହାର କରିଅଛନ୍ତି । ଏହାର ଫଳରେ ଗଡ଼ଜାତ ଆନ୍ଦୋଳନର ଆରମ୍ଭ । ଏହି ଆନ୍ଦୋଳନର ଫଳ ସ୍ୱରୂପ ରଣପୁରଠାରେ Political Bezel gate ସାହେବଙ୍କର ଜଣେ ପ୍ରଜାଙ୍କ ଦାଣ୍ଡିପିଣ୍ଡାରେ ଥରେ ନୀଳଗିରିକୁ ଏହି Ramsey ପରିଦର୍ଶନ ଉଦ୍ଦେଶ୍ୟରେ ଯାଇଥିଲେ । ସେତେବେଳକୁ ନୀଳଗିରିରେ ହାଇସ୍କୁଲ ଆରମ୍ଭ ହେଉଥାଏ । ଜଣେ ଲେଖକ ଏ ସମ୍ପର୍କରେ ଯାହା ଉଲ୍ଲେଖ କରିଅଛନ୍ତି ତାହା ଏଠାରେ ବିଶ୍ୱସ୍ତ ଉପାଦାନ ସ୍ୱରୂପ ଉଲ୍ଲେଖ କରାଯାଇପାରେ ।

'ପୁରୀ ଜିଲ୍ଲା ସ୍କୁଲରୁ ହରିହର ବଦଳି ନେଇ ଗଲେ ନୀଳଗିରି ଗଡ଼ଜାତର ଗୋଟିଏ ପ୍ରସ୍ତାବିତ ହାଇସ୍କୁଲକୁ ଶିକ୍ଷକହୋଇ । ସେ ସେଠାକୁ ଗଲାବେଳକୁ ଉମାଚରଣ ଦାସ ଥା'ନ୍ତି ହେଡ଼ମାଷ୍ଟର । ତାଙ୍କ ପରେ ଗୋପବନ୍ଧୁ ଦାସ ସେହି ପଦରେ ରହିଲେ । ଓକିଲାତି ଫଳ ବାହାରିବାରୁ ଦାସେ ଆପଣେ ଓକିଲାତି କରିବାକୁ ଚାଲିଗଲେ । ହରିହର ସହକାରୀ ହେଡ଼ମାଷ୍ଟର ଭାବରେ ଥାଆନ୍ତି । ସ୍କୁଲଟିକୁ ଭଲଭାବରେ ଗଢ଼ିବା ପାଇଁ ପ୍ରବଳ ଉଦ୍ୟମ ଚାଲିଥାଏ । ଥରେ ପଲିଟିକାଲ ଏଜେଣ୍ଟ କବ୍‌ଡେନ୍ ରମସେ ଆସିଲେ । ବଙ୍ଗଦେଶରେ ସେତେବେଳକୁ ଜାତୀୟ ଆନ୍ଦୋଳନ ଖୁବ୍ ମୁଣ୍ଡ ଟେକିଲାଣି । କବ୍‌ଡେନ୍‌ଙ୍କର ବୋଧହୁଏ

ସନ୍ଦେହ ହେଲା ଯେ ମୋଗଲବନ୍ଦୀର ଏହି ଯୁବକମାନେ ଏଠାରେ ଆସି, ଗୋଟିଏ କିଛି ମତଲବରେ ଅଛନ୍ତି । ସେ ରାଜାଙ୍କୁ ପରାମର୍ଶ ଦେଲେ ହାଇସ୍କୁଲ ଭାଙ୍ଗି ଦିଆଯାଉ । ତାଙ୍କ ପରାମର୍ଶ ହୁକୁମଠାରୁ ବଳେ । ସ୍କୁଲ ଭାଙ୍ଗିଲା । ତା'ପରେ ହରିହର ଆସିଲେ କଟକ ପ୍ୟାରୀମୋହନ ଏକାଡେମୀକୁ ।'

ଗୋପବନ୍ଧୁ ଓ ହରିହର ନୀଳଗିରିରେ ହେଡ୍‌ମାଷ୍ଟର ଓ ଆସିଷ୍ଟାଣ୍ଟ ହେଡ୍‌ମାଷ୍ଟର ଥିବାସମୟରେ ଯେଉଁ ସୁରୁଚିପୂର୍ଣ୍ଣ ଓ ସଂସ୍କାରମୂଳକ ଘଟଣାମାନ ଘଟିଲା, ତାହା ସେତେବେଳର ନୀଳଗିରିର ପ୍ରଜାମଣ୍ଡଳ, ରାଜାମହୋଦୟ ଓ ଦୁଷ୍ଟ Political Agent କବ୍‌ଡେନ୍ ରାମସେଙ୍କର ମନ୍ତଗତି ଏହି ଦୁଇଜଣଙ୍କ ପ୍ରତି ସମ୍ପୂର୍ଣ୍ଣ ରୂପେ ପରିବର୍ତ୍ତିତ କରିଦେଲା । ସେତେବେଳେ ହରିଜନ ଛାତ୍ରମାନଙ୍କୁ ଅବାଧରେ ନୀଳଗିରି ସ୍କୁଲରେ ଗ୍ରହଣ କରାଯାଉଥିଲା—ଯାହା ମହାତ୍ମାଗାନ୍ଧିଙ୍କର ହରିଜନ ଆନ୍ଦୋଳନର ପରିକଳ୍ପନାର ବହୁଦିନ ଆଗର କଥା ।

ନୀଳଗିରିରେ ଗୋପବନ୍ଧୁ ଓ ହରିହରଙ୍କର ଲୋକବିରୁଦ୍ଧ କର୍ମମାନ ଦେଖି ତଥାକଥିତ ଶୁଦ୍ଧପୂତ ବ୍ରାହ୍ମଣମାନେ ଏମାନଙ୍କ ପ୍ରତି ବିରକ୍ତି ପ୍ରକାଶ କଲେ । ପରସ୍ପର କୁହାକୁହି ହେଲେ—ଏଥିରୁ ଯୋଉଡ଼େ ଲୋକ ପୁରୀରୁ ଆସି ଆମ ରାଜ୍ୟଟାକୁ ନଷ୍ଟଭ୍ରଷ୍ଟ କରିଦେବେ । ହାଡ଼ି, ବାଉରୀଙ୍କ ସଙ୍ଗେ ପାଠ ପଢ଼ିଲେ ପିଲାଙ୍କର ମତିଗତି କ'ଣ ହେବ ? ରାଜା ମଧ୍ୟ ଏକଥା ଶୁଣି ଉଦ୍‌ବ୍ୟକ୍ତ ହୋଇ ଉଠିଲେ । କବ୍‌ଡେନ୍ ସାହେବ ନିଜେ ନୀଳଗିରି ପରିଦର୍ଶନ କରିବାକୁ ଆସି ଏହି ମହା ବିଭ୍ରାଟର ପରିଚୟ ପାଇଲେ । ସେତେବେଳକୁ ଗୋପବନ୍ଧୁ B. L. ପରୀକ୍ଷା ଦେଇ କଲିକତାରୁ ଆସି ନୀଳଗିରିରେ ଶିକ୍ଷକତା କରୁଥାନ୍ତି । ଏହିଠାରେ ତାଙ୍କ ଜୀବନର ଦୁଇଟି ଉଲ୍ଲେଖନୀୟ ଘଟଣା ଘଟିଥିଲା । ଗୋଟିଏ ହେଲା ସେ ଏହିଠାରେ B. L. ପାସ୍ କରିବା ଖବର ପାଇଲେ ଏବଂ ଦ୍ୱିତୀୟଟି ହେଲା ତାଙ୍କର ଗୋଟିଏ ପୁତ୍ର ସନ୍ତାନ ମରିଯିବାର ଖବର ସେ ଏହିଠାରେ ପାଇଥିଲେ ।

ମାଲଗିରି ହାଇସ୍କୁଲ୍‌କୁ ଭାଙ୍ଗିଦେବା ନିମନ୍ତେ କବ୍‌ଡ଼େନ୍ ସାହେବ କାହିଁକି ହୁକୁମ ଦେଲେ ତାହାର ଅନ୍ୟ ଗୋଟିଏ କାରଣ ଅଛି । ସେହି କାରଣଟି ହେଲା ମାଲଗିରି ସ୍କୁଲର ଅଳ୍ପଦୂରରେ ପୁରୀରୁ ରଥଯାତ୍ରା ଦେଖି କେତେଜଣ ଯାତ୍ରୀ ଆସି ଆଶ୍ରୟ ନେଲେ । ସେଠାରେ ଗୋଟିଏ ବୁଢ଼ୀକୁ ହଇଜା ହେଲା । ବୁଢ଼ୀଟି କେଉଁ ଜାତିର ଲୋକ ସେ କଥା କାହାକୁ ଜଣା ନାହିଁ । କିନ୍ତୁ ଶବଟି ସକାଳୁ ସନ୍ଧ୍ୟାପର୍ଯ୍ୟନ୍ତ ରାସ୍ତା କଡ଼ରେ ପଡ଼ିରହିବା ପରେ ଗୋପବନ୍ଧୁ ଓ ହରିହର ଯାଇ ଦେଖନ୍ତି ଗୋଟିଏ ସମ୍ପୂର୍ଣ୍ଣ ଅପରିଚିତ ବିଦେଶୀ ଲୋକର ଶବ । ତେଣୁ ସେ ଦୁଇଜଣ ଶବ ସତ୍କାର କରିବା ସକାଶେ ଦୁଇ ଚାରି ଜଣ ଲୋକଙ୍କୁ ଡାକିଲେ । କିନ୍ତୁ କେହି ନ ଆସିବାରୁ ଗୋପବନ୍ଧୁ ଓ ହରିହର ଦୁଇଜଣ ମିଶି ଯଥାବିଧି ଶବର ସତ୍କାର କଲେ । ଏହି କଥା ଶୁଣି ମାଲଗିରିବାସୀ ଏ ଦୁଇଜଣଙ୍କ ଉପରେ ଅତ୍ୟନ୍ତ ବିରକ୍ତ ହୋଇଉଠିଲେ । ଫଳରେ ସ୍କୁଲ ଭାଙ୍ଗିଗଲା ।

ତାପରେ ହରିହର ଆସିଲେ କଟକର ପ୍ୟାରୀମୋହନ ଏକାଡେମୀକୁ ଶିକ୍ଷକ ହୋଇ ।

ଏହାପୂର୍ବରୁ କଟକ କଲେଜରେ ପଢ଼ୁଥିବା ସମୟରେ ସେ ଯେଉଁ ବିଚକ୍ଷଣତା ଓ ବୁଦ୍ଧିମତ୍ତାର ପରିଚୟ ଦେଇଥିଲେ, ତାହା ଉତ୍କଳ ସର୍ବୋଦୟ ମଣ୍ଡଳର ସଂପାଦକ ଶ୍ରୀ ନରହରି ସ୍ୱାଇଁ 'ଯୁଗଜନ୍ମା ହରିହର' ପ୍ରବନ୍ଧରେ ଉଲ୍ଲେଖ କରିଅଛନ୍ତି, "ଏହି ସମୟରେ ଉତ୍କଳଗୌରବ ମଧୁସୂଦନ ଦାସଙ୍କ ସାହଚର୍ଯ୍ୟ ତାଙ୍କୁବି ଖୁବ୍ ବଳ ଯୋଗାଇଲା । କଲେଜରେ ପଢ଼ିଲାବେଳେ କାରିଗିରି ବିଷୟରେ ଅଧ୍ୟୟନ କରିବା ପାଇଁ ଜାପାନ ଯିବାକୁ ସ୍ଥିରକରି ମୟୂରଭଞ୍ଜ ରାଜାସାହେବଙ୍କ ଆଶ୍ରୟକାମୀ ହେଲେ । ମଧୁବାବୁଙ୍କ ସୁପାରିଶ କ୍ରମେ ମୟୂରଭଞ୍ଜ ରାଜାଙ୍କର ବୃତ୍ତି ମିଳିବାର ନିୟମ ଥାଏ । ତେଣୁ ସୁପାରିଶ୍‌ପତ୍ର ଆଣିବା ପାଇଁ ପାଖକୁ ଯାଇ ନିଜର ଅଭିମତ ଜଣାଇଲେ । ମଧୁବାବୁ ତାଙ୍କର ଚରିତ୍ରଗତ ସାର୍ଟିଫିକେଟ୍ ଅନ୍ୟଠାରୁ ଆଣିବାକୁ ପରାମର୍ଶ ଦେଲେ । ମାତ୍ର ଯୁବକ

ହରିହର ଗାମ୍ଭୀର୍ଯ୍ୟପୂର୍ଣ୍ଣ ଭାଷାରେ କହିଲେ—"ଆଜ୍ଞା ! ମୋ ଚରିତ୍ର ବିଷୟରେ ଅନ୍ୟ ଲୋକ କିପରି ସାର୍ଟିଫିକେଟ ଦେବେ ? ମୋ ଚରିତ୍ର କଥା ତ ମୋତେ କେବଳ ଜଣା ।" ଜଣେ କଲେଜ ଛାତ୍ର ମୁହଁରୁ ଏପରି ଖୋଲାଖୋଲି ଜବାବ ଶୁଣି ,ମଧୁବାବୁ କୁଣ୍ଢାଇ ପକାଇଲେ । ମଧୁବାବୁ ଜାଣିଲେ ଏହି ଯୁବକ ଦିନେ ଓଡ଼ିଶାରେ ଜଣେ ଶ୍ରେଷ୍ଠ ପୁରୁଷ ହୋଇ କିଛି କାମ କରିପାରିବେ । ତାହା ହିଁ ହେଲା । ମଧୁବାବୁଙ୍କ ସୁପାରିଶ୍‌ରେ ତାଙ୍କର ଜାପାନ ଯିବାର ସ୍ଥିର ହେଲା । ମାତ୍ର ପରେ ସେ ଚକ୍ଷୁ ରୋଗରେ ଆକ୍ରାନ୍ତ ହେବାରୁ ଜାପାନ ଯିବାର ବାଟ ବନ୍ଦ ହୋଇଗଲା ।"

ଏକାଡେମୀର ଶିକ୍ଷକତାର ଅନୁଭୂତି ନିଜେ ହରିହର ଯେପରି ବ୍ୟକ୍ତ କରିଅଛନ୍ତି, ତାହା ନିମ୍ନରେ ଦିଆଗଲା—ମୁଁ ଗୋପବନ୍ଧୁଙ୍କ ସାଙ୍ଗ ଛାଡ଼ି ଏକାକୀ ଯାଇ କଟକ ପ୍ୟାରୀମୋହନ ଏକାଡେମୀରେ ଶିକ୍ଷକତା କଲି । କିନ୍ତୁ ମାଳଗିରି ଓ କଟକ ମଧ୍ୟରେ ଘୋର ପ୍ରଭେଦ । ମାଳଗିରି ପିଲେ ଏତେ ଦୁଷ୍ଟାମି ଜାଣନ୍ତି ନାହିଁ । ଏବେ ସୁଦ୍ଧା କଟକ ଲୋକେ କହନ୍ତି, "Academy full of Phajilami (ଫାଜିଲାମି) ସେହି ଫାଜିଲ ଛାତ୍ରମାନଙ୍କୁ ମୁଁ କିପରି ଭଲ ମଣିଷ କରିବି, ତାହା ହିଁ ମୋର ଦିନରାତି ଚିନ୍ତା ହେଲା । ସେଥିରେ ପୁଣି ହେଡ଼ମାଷ୍ଟର ନିମେଇଁବାବୁ ମୋତେ ଏକାଦଶ ଶ୍ରେଣୀରେ ଗଣିତ ପଢ଼ାଇବାକୁ ଦେଲେ । ମୋତେ ପିଲେ କଲବଲ କରିବାକୁ ବହୁତ ଚେଷ୍ଟା କଲେ । କିନ୍ତୁ ପାରିଲେ ନାହିଁ '

ଏହି ଏକାଡେମୀର ଶିକ୍ଷକତା ସମ୍ବନ୍ଧରେ ସେ ୧୯୫୫ ଖ୍ରୀଷ୍ଟାବ୍ଦରେ ଯାହା ଶ୍ରୀ ଇନ୍ଦୁଭୂଷଣ ମିଶ୍ରଙ୍କୁ କହିଥିଲେ, ସେହି କଥା ଏଠାରେ ଉଦ୍ଧାର କରାଯାଉଛି । ସେ ଲେଖିଛନ୍ତି, "ଆପଣ ଶିକ୍ଷକ ହିସାବରେ ସୁନାମ ଅର୍ଜନ କରିଥିଲେ । ଆମକୁ କିଛି ଉପାୟ ବତାନ୍ତୁ । ସୁତରାଂ ବାଧ୍ୟହୋଇ ମୋତେ କହିବାକୁ ହେଲା ଯେ ମୋ ପାଖରେ କୌଣସି ଫର୍ମୁଲା ନାହିଁ ଏବଂ ମୁଁ ଅନେକଦିନ ତଳେ ଶିକ୍ଷକ ଥିଲି । ଆପଣମାନେ ବର୍ତ୍ତମାନ ଯୁଗର ଶିକ୍ଷକ, ଅଧିକ ଜ୍ଞାନୀ ଓ ଶିକ୍ଷା-ଦାନକୁଶଳୀ । ମୁଁ କଣ ଆପଣଙ୍କୁ ବାଟ ବତେଇବି ? ସେମାନେ ଯେତେବେଳେ କିଛି କହିବାକୁ ବାଧ୍ୟ କଲେ,

ମୁଁ ତାଙ୍କୁ ମୋର ଶିକ୍ଷକ ଜୀବନର ଅଭିଜ୍ଞତାରୁ ବିକଥା ଶୁଣାଇଲି ।" ସେ କପ୍ତାନ ପ୍ୟାରୀମୋହନ ଏକାଡେମୀରେ ଶିକ୍ଷକତା କଲେ ସେଇକଥା ପ୍ରାଞ୍ଜଳଭାବରେ ବର୍ଣ୍ଣନା କଲେ । ତାହାହେଲା ଏହି :—

"ଯୁବକ ହରିବାବୁ (ଆଗ୍ରାର୍ଯ୍ୟ ହରିହର) ଏଫ୍. ଏ. ପାସ୍ ପରେ ଚାକିରି ଖୋଜିଲେ । ଏକାଡେମୀରେ ଶିକ୍ଷକ ଚାକିରିଟିଏ ମିଳିଲା । ପ୍ରଧାନ ଶିକ୍ଷକ ଥିଲେ ହମାଇଁବାବୁ । ସେ ହରିବାବୁଙ୍କୁ ଆନନ୍ଦରେ ଗ୍ରହଣ କଲେ ଏବଂ ତାଙ୍କୁ ଏକାଦଶ ଶ୍ରେଣୀରେ ଗଣିତ ପଢ଼ାଇବା ପାଇଁ ଆଦେଶ ଦେଲେ । ସେ ଅନୁସାରେ ରୁଟିନ୍ ହୋଇଗଲା । ହରିବାବୁଙ୍କର ସର୍ବୋଚ୍ଚ ଶ୍ରେଣୀରେ ଗଣିତ ପଢ଼ାଇବା ପାଇଁ ମନରେ ଯଥେଷ୍ଟ ଦ୍ୱିଧା ଥିଲା, ତଥାପି ପ୍ରଧାନ ଶିକ୍ଷକଙ୍କ ଆଦେଶକୁ ଶିରୋଧାର୍ଯ୍ୟ ମନେକରି 'ହଁ' କଲେ । ଟିଚର୍ସ କମନରୁମ୍‌ରେ ଆଲୋଚନା ଚାଲିଲା । ସମସ୍ତେ ଶଙ୍କିତ ଓ ବ୍ୟଥିତ ହେଲେ ।

ସମସ୍ତ ଶିକ୍ଷକଙ୍କ ତରଫରୁ ଜଣେ ହରିବାବୁଙ୍କୁ କହିଲେ, "ଆପଣ ଭଲ ଗୁଣ ଓ ଜ୍ଞାନୀ ଶିକ୍ଷକ ହୋଇ ପାରନ୍ତି, କିନ୍ତୁ ଉପର ଶ୍ରେଣୀରେ ଗଣିତ ନେବାକୁ ରାଜି ହୁଅନ୍ତୁ ନାହିଁ । କାରଣ ଆପଣଙ୍କର ଅଭିଜ୍ଞତା ନାହିଁ । ସେ ଶ୍ରେଣୀରେ ପିଲାମାନେ ଭାରି ଦୁଷ୍ଟ । ଆପଣ ପତଳା ଲୋକ । ଶୃଙ୍ଖଳା ରଖିବା ଆପଣଙ୍କ ପକ୍ଷେ କଷ୍ଟକର ହେବ । ଆମର ଅନୁରୋଧ, ହେଡ୍‌ମାଷ୍ଟରଙ୍କୁ ମନା କରିଦିଅନ୍ତୁ ।" ଉପର ଶ୍ରେଣୀରେ ଗଣିତ ପଢ଼ାଇବାପାଇଁ ହରିବାବୁ ବିନମ୍ରର ସହିତ କହିଲେ, "ପ୍ରଧାନ ଶିକ୍ଷକଙ୍କ ଆଦେଶକୁ ମାନି ନେଇ ସାରିଲା ପରେ ପୁଣି ମତ ବଦଳାଇବା ତାଙ୍କ ପକ୍ଷରେ ସମ୍ଭବ ନୁହେଁ ।" ତା ପରେ ହରିବାବୁ ଏକାଦଶ ଶ୍ରେଣୀରେ ଗଣିତ ପଢ଼ାଇବାକୁ ଲାଗିଲେ ।

ଶିକ୍ଷକ ବନ୍ଧୁମାନେ ଉତ୍କଣ୍ଠାର ସହିତ ଅପେକ୍ଷା କଲେ ଫଳାଫଳକୁ ! ହରିବାବୁ ଗଲେ ଶ୍ରେଣୀକୁ, ଦେଖିଲେ ଅଧାଧିକ ଗୁଣ ତାଙ୍କର ବୟସର । ଦେଖିବାକୁ ଗୋଟିଏ ଗୋଟିଏ ମାଲ । ପିଲେ ନୂଆ ମାଷ୍ଟରଙ୍କୁ

ଦେଖି ଆଖି ଠଗ୍‌ଠଗ ହେଲେ, ଗଳା ସଫା କଲେ । ମଝିରେ ମଝିରେ କଥାବାର୍ତ୍ତା, ମନ୍ତବ୍ୟ ପ୍ରକାଶ ଇତ୍ୟାଦି ଶୁଭିଲା । ହରିବାବୁ ହାରିବା ଲୋକ ନୁହନ୍ତି । ସେ ସବୁବେଳେ ଠିଆହୋଇ ପଢ଼ାନ୍ତି । ପିଲାମାନେ ଅଙ୍କ କଷିଲା-ବେଳେ କ୍ଲାସରେ ବୁଲି ଗୋଳମାଳ କରୁଥିବା ପିଲାମାନଙ୍କ ପାଖକୁ ଯାଇ ବଛାବଛି କରିଦିଅନ୍ତି । ଗୋଳମାଳ କମୁ ମଝିରେ ମଝିରେ ହୁଏ । ତା' ପରେ ହରିବାବୁ ସବୁ ପିଲାଙ୍କର ନାଁ ଗୁଡ଼ାକ ମନେରଖି ତାଙ୍କୁ ସବୁ ନାଁ ଧରି ଡାକିଲେ । ସମସ୍ତଙ୍କ ନାଁ ଜାଣି ସାରିଲା ପରେ ସେମାନଙ୍କର ବାପାଙ୍କ ନାଁ ଓ ସାଇର ନାଁ ବୁଝିନେଲେ ଓ ଗୋଟିଏ ଟିପା ଖାତାରେ ଟିପି ରଖିଲେ ।

ଶ୍ରେଣୀରେ କେବଳ ପିଲା ସଙ୍ଗେ ବ୍ୟକ୍ତିଗତ ସମ୍ପର୍କ ସ୍ଥାପନ କରିବାରେ ଅନେକ ପରିମାଣରେ ଗୋଳମାଳ କମିଗଲା । ତା'ପରେ ହରିବାବୁ ଗଲେ ପିଲାଙ୍କ ଘରକୁ । ପ୍ରତିଦିନ ସନ୍ଧ୍ୟାରେ ସେ ଦୁଇ ତିନୋଟି ପିଲାଙ୍କ ଘରକୁ ଯିବା ଆରମ୍ଭ କରିଦେଲେ । ସାଇ ଭିତରେ ପଶି ପିଲାର ଘର ଖୋଜି ଖୋଜି ତା ଘରେ ପହଞ୍ଚି ନାଁ ଧରି ଡାକନ୍ତି । ଛାତ୍ର ଯଦି ଘରେ ଥାଏ ତାହା ହେଲେ ତା ବାପା ଅଛନ୍ତି କି କହି ଛାତ୍ରର ପଢ଼ାଘରେ ପ୍ରବେଶ କରନ୍ତି । ବାପା ଯଦି ଥାନ୍ତି ତା ହେଲେ ପିଲାର ଭଲମନ୍ଦ ପଢ଼ାପଢ଼ି ସମ୍ବନ୍ଧରେ ତାଙ୍କ ସଙ୍ଗେ କଥାବାର୍ତ୍ତା କରନ୍ତି ଏବଂ ଛାତ୍ରକୁ ଦୁଇଖଣ୍ଡ ଅଙ୍କ, ଟ୍ରାନ୍‌ସଲେସନ ଟିକିଏ ବଛାବଛି କରି ଆଉ ଗୋଟିଏ ଛାତ୍ରର ଘରକୁ ଯାଆନ୍ତି । ଏହିପରି ସେ ସବୁ ପିଲା ଓ ତାର ବାପା ବା ଅଭିଭାବକଙ୍କ ସଙ୍ଗେ ଘନିଷ୍ଠଭାବେ ପରିଚିତ ହୋଇଗଲେ । ଆଉ କ୍ଲାସରେ ଗଣ୍ଡଗୋଳ ତ ଦୂରର କଥା ଫୁସ୍‌ଫାସ୍ ବି ବନ୍ଦ ହୋଇଗଲା । ହରିବାବୁଙ୍କ କ୍ଲାସ୍‌ରେ ଶୃଙ୍ଖଳା ଦେଖି ଶିକ୍ଷକମାନେ ଆଶ୍ଚର୍ଯ୍ୟାନ୍ୱିତ ହେଲେ । ହରିବାବୁ ଛୋଟାଲୋକ ହେଲେ ମଧ୍ୟ ଉପସ୍ଥ ଗୁରୁ ଓ ଛାତ୍ର ତାଙ୍କୁ ସମ୍ମାନ କଲେ । ସ୍କୁଲ୍ କ୍ଲାସରେ ଶୃଙ୍ଖଳାର ହାନି ଦେଖାଗଲେ ହରିବାବୁଙ୍କୁ ଡାକରା ପଡ଼ିଲା । ଏତିକି ଶୁଣି ମୁଁ କହିଲି, "ଆଜ୍ଞା, ଏଇଥିରୁ କେତେକ କଲେଜ ଶିକ୍ଷକମାନେ ନିଶ୍ଚୟ ବହୁତ ଶିଖିଥିବେ ।"

ଆଜକାଲ ଶିକ୍ଷକ ଓ ଛାତ୍ରମାନଙ୍କ ମଧ୍ୟରେ ପ୍ରତ୍ୟକ୍ଷ ସମ୍ବନ୍ଧ ଆଦୌ ରହୁ ନାହିଁ । ସ୍କୁଲରେ ଯେତିକ ଘଣ୍ଟା ପାଇଁ ସମ୍ବନ୍ଧ ରହେ ତାହା ମେକାନିକାଲ୍ । ଆମର ପ୍ରଚଳିତ ଶିକ୍ଷାମଣ୍ଡରେ ଶିକ୍ଷକମାନେ ସାଇ ସାଇ ବାଣ୍ଟି ନେଇ ଛାତ୍ରମାନଙ୍କ ଘରକୁ ଯାଇ ବାପା ମା'ଙ୍କ ସହିତ ସମ୍ପର୍କ ରଖି ପିଲାର ସାର୍ବାଙ୍ଗୀନ ବିକାଶ ପ୍ରତି ଦୃଷ୍ଟିଦେବା ପଦ୍ଧତି ଅଛି । କିନ୍ତୁ ଏ ଯୁଗରେ ଏତେ କଷ୍ଟ କରୁଛି କିଏ ?"

ଆଚାର୍ଯ୍ୟଙ୍କର ମନ୍ତ୍ରଗୁରୁ ଗୋପବନ୍ଧୁଙ୍କର ଜ୍ୟେଷ୍ଠ ଜାମାତା ଓ ସତ୍ୟବାଦୀ ସ୍କୁଲର ସାମୟିକ ଶିକ୍ଷକ ୬ ଅଧ୍ୟାପକ ଶ୍ରୀ ରତ୍ନାକର ପତି ଏକାଡେମୀର ଛାତ୍ର ଥାଇ ଆଚାର୍ଯ୍ୟଙ୍କର ଘନିଷ୍ଠ ସମ୍ପର୍କରେ ଆସି ଯାହା ଲେଖିଥିଲେ; ତାହା ଅବିକଳ ତାଙ୍କ ଲିଖିତ 'ଆଦର୍ଶ ଶିକ୍ଷକ ଆଚାର୍ଯ୍ୟ-ହରିହର' ପ୍ରବନ୍ଧରୁ ଦିଆଗଲା ।

"କଟକ ପ୍ୟାରୀମୋହନ ଏକାଡେମୀରେ ଛାତ୍ର ଥିଲାବେଳେ ମୁଁ ସର୍ବ ପ୍ରଥମେ ଆଚାର୍ଯ୍ୟ ମହାଶୟଙ୍କ ସଂସ୍ପର୍ଶରେ ଆସିଲି । ସେତେବେଳେ ସେ ଉକ୍ତ ବିଦ୍ୟାଳୟରେ ଗଣିତ-ଶିକ୍ଷକ ଭାବରେ ଯୋଗ ଦେଲେ । ଗଣିତରେ ତାଙ୍କର ଶିଷ୍ୟତ୍ୱ ଲାଭ କରିବାର ସୌଭାଗ୍ୟ ମୋତେ ମିଳିଥିଲା । ତାଙ୍କର ଶିକ୍ଷାଦାନ ପ୍ରଣାଳୀରେ ନୂତନତ୍ୱ ତଥା ମୌଳିକତା ଦେଖି କେବଳ ମୁଁ ନୁହେଁ, ମୋ ଶ୍ରେଣୀର ସମସ୍ତ ପାରଗ ଓ ଅପାରଗ ଛାତ୍ର ମୁଗ୍ଧ ହୋଇ ପଡ଼ୁଥିଲେ । ଏତେ ସରଳ ସୁନ୍ଦର ଭାବରେ ଗଣିତ ଶିକ୍ଷା ଦେବା ଏଥି ପୂର୍ବରୁ କ୍ୱଚିତ୍ ଦେଖିବାକୁ ପାଇଥିଲି ।

ଗତାନୁଗତିକ ପ୍ରଣାଳୀରେ ଶିକ୍ଷା ଦେବା ପରିବର୍ତ୍ତେ ବିଷୟଟିରେ ଛାତ୍ରମାନଙ୍କର ପ୍ରବେଶ ଓ ବ୍ୟୁତ୍ପତ୍ତି ପ୍ରତି ଲକ୍ଷ୍ୟ ରଖି ସେ ଶିକ୍ଷା ଦେଉଥିଲେ । ଯେତେବଡ଼ କଠିନ ପ୍ରଶ୍ନ ହେଲେ ବି ସମାଧାନ ପାଇଁ ତାଙ୍କୁ ଭାବିବାକୁ ପଡୁ ନ ଥିଲା । ଅନ୍ୟାନ୍ୟ ବିଷୟ ଯେ ସେ ପଢ଼ାଉ ନ ଥିଲେ, ତାହା ନୁହେଁ, କିନ୍ତୁ ପ୍ରଧାନତଃ ଗଣିତ ହିଁ ତାଙ୍କର ଦକ୍ଷତାର ପରିଚୟ ଦେଇଥିଲା । ଜ୍ୟାମିତି, ବୀଜଗଣିତ ଓ ସାଧାରଣ ଗଣିତ, ପ୍ରତ୍ୟେକ

ବିଷୟରେ ତାଙ୍କର ଅଦ୍ଭୁତ ଅନ୍ତର୍ଦୃଷ୍ଟିର ପରିଚୟ ଆମ୍ଭେମାନେ ପାଇଥିଲୁଁ । କିଛୁଦିନ ପରେ ତାଙ୍କର ଏହି ଆଦର୍ଶ ଗଣିତ-ଶିକ୍ଷକତା ସାଙ୍ଗକୁ ଛାତ୍ରମାନଙ୍କର ନୈତିକ ଜୀବନ-ଗଠନ ପ୍ରତି ତାଙ୍କର ପ୍ରଚେଷ୍ଟା ଚାଲିଲା ।

ମାମୁଲି ଶିକ୍ଷକ ଭଳି କେବଳ ନିଜର ବିଷୟଟିକୁ ପଢ଼ାଇ ଦେଇ ଉଦାସୀନ ରହିବା ତାଙ୍କର ସ୍ୱଭାବ ନ ଥିଲା । ସେ ପର୍ଯ୍ୟନ୍ତ ବିଦ୍ୟାଳୟର ସ୍ଥାପୟିତା କର୍ମବୀର ପ୍ୟାରୀମୋହନଙ୍କ ସ୍ମୃତି ଦିବସ ପାଳିତ ହୋଇ ନ ଥିଲା । କିନ୍ତୁ ଆଚାର୍ଯ୍ୟ ମହାଶୟଙ୍କର କାର୍ଯ୍ୟକାଳ ମଧ୍ୟରେ ବିଦ୍ୟାଳୟର ଶିକ୍ଷକ ଓ ଛାତ୍ରମାନଙ୍କ ମଧ୍ୟରେ ପ୍ୟାରୀମୋହନଙ୍କର ସ୍ମୃତିଦିବସ ପାଳନର ଅୟମାରମ୍ଭ ହେଲା । ପ୍ୟାରୀମୋହନଙ୍କର ଦେଶାତ୍ମବୋଧ, ପରୋପକାରିତା ଓ ଦରିଦ୍ର ସେବା ପ୍ରଭୃତି ଆଦର୍ଶ ଗୁଣଗୁଡ଼ିକର ଅନୁଧ୍ୟାନ ତଥା ଅନୁକରଣ କରିବା ପାଇଁ ସେ ଏକ ବାଟ ସର୍ବପ୍ରଥମେ ଫିଟାଇ ଦେଲେ । ମନେପଡ଼େ, ଆଚାର୍ଯ୍ୟ ମହାଶୟ ସେତେବେଳେ ଛାତ୍ରମାନଙ୍କୁ ଡାକି ସେମାନଙ୍କୁ ଶପଥପୂର୍ବକ ଗୋଟିଏ ଗୋଟିଏ ସଦ୍‌ଗୁଣ ବ୍ରତରୂପେ ପାଳନ କରିବାକୁ ଉପଦେଶ ଦେଉଥିଲେ । ଉଦାହରଣ ସ୍ୱରୂପ, କେତେକ ଛାତ୍ର ସଦ୍‌ବାଦିତା, କେତେକ ସାଧୁତା, କେତେକ ଜନସେବା, କେତେକ ସରଳତା ପ୍ରଭୃତି ସଦ୍‌ଗୁଣକୁ ବ୍ରତରୂପେ ଗ୍ରହଣ କରିଥିଲେ । ଛାତ୍ରମାନେ ଅଧ୍ୟୟନ ସଙ୍ଗେ ଏହି ଗୁଣଗୁଡ଼ିକର ଅଧିକାରୀ ହେଲେ ଜୀବନରେ ଗୋଟିଏ ଗୋଟିଏ ଦିଗରେ ଉତ୍କର୍ଷ ଲଭ କରି ଆଦର୍ଶ ହୋଇପାରିବେ ବୋଲି ତାଙ୍କର ଦୃଢ଼ ଧାରଣା ଥିଲା । ଶ୍ରେଣୀରେ ତାଙ୍କର ଅଦୃଷ୍ଟପୂର୍ବ ପ୍ରଭାବ ଥିଲା ।

ଶିକ୍ଷକ ହିସାବରେ ସେ ଅତ୍ୟନ୍ତ ଧୈର୍ଯ୍ୟଶୀଳ ଥିଲେ । ଦୁର୍ଦ୍ଧର୍ଷ ଛାତ୍ରମାନଙ୍କ ବ୍ୟବହାର ଓ ଅମନୋଯୋଗିତାରେ ଧୈର୍ଯ୍ୟଚ୍ୟୁତ ହୋଇ ପଡ଼ିବାର ଆମ୍ଭେମାନେ ତାଙ୍କୁ ଦେଖିବାକୁ ପାଇନାହୁଁ । ତାଙ୍କର ଶାସନ କୌଶଳ ଦଣ୍ଡ ସାପେକ୍ଷ ନ ଥିଲା । କେବଳ ସ୍ନେହପୂର୍ଣ୍ଣ ବିଶଦ ଉପଦେଶ ହିଁ ଯଥେଷ୍ଟ ଥିଲା । ଶିକ୍ଷକ ଭାବରେ ତାଙ୍କର ଅକୃତ୍ରିମ କର୍ତ୍ତବ୍ୟନିଷ୍ଠା ଓ

ଅନାଡ଼ମ୍ବର ବ୍ୟକ୍ତିତ୍ୱ ଛାତ୍ରମାନଙ୍କ ଆଗରେ ଆଦର୍ଶ ରୂପରେ ବିଦ୍ୟମାନ ଥିଲା । ତାଙ୍କର ଅନାବିଳ ସ୍ନେହ ଓ ସହୃଦୟତା ବଳରେ ସେ କେବଳ ଆମ ବିଦ୍ୟାଳୟରେ ନୁହେଁ, ସହରସ୍ଥ ଅନ୍ୟାନ୍ୟ ବିଦ୍ୟାଳୟର ଛାତ୍ର-ମାନଙ୍କୁ ମଧ୍ୟ ପ୍ରଭାବିତ କରିପାରୁଥିଲେ । 'ପରୋପଦେଶେ ପାଣ୍ଡିତ୍ୟ' ତାଙ୍କର ଜୀବନର ନୀତି ନ ଥିଲା ।

ତାଙ୍କର ନିଜ ଜୀବନ ମଧ୍ୟ ବହୁ ସଦ୍‌ଗୁଣର ଆଧାର ଥିଲା । ଛାତ୍ରମାନଙ୍କ ଜୀବନରେ ନୈତିକ ଦୁର୍ବଳତା କିପରି ପ୍ରବେଶ ନ କରିବ, ଏବଂ ସେମାନେ କିପରି ନୈତିକ ସାହସରେ ବଳୀୟାନ ହେବେ, ସେଥିପ୍ରତି ସେ ମନପ୍ରାଣ ଢ଼ାଳି ଦେଇଥିଲେ । କୌଣସି ଅପକର୍ମ କରି ଛାତ୍ରମାନେ ସାଧାରଣତଃ ଶିକ୍ଷକଙ୍କ ନିକଟରେ ସ୍ୱୀକାର କରନ୍ତି ନାହିଁ । ମାତ୍ର ଆଶ୍ଚର୍ଯ୍ୟର କଥା, ଆଚାର୍ଯ୍ୟ ମହାଶୟଙ୍କ ଆଗରେ ଛାତ୍ର ଅକାତର ତଥା ଅକୁଣ୍ଠିତ ଭାବରେ ତାହାର ଅପକର୍ମ ସ୍ୱୀକାର କରୁଥିଲେ । ତାଙ୍କଠାରୁ ଏହି ମହାଶିକ୍ଷା ମିଳୁଥିଲା ଯେ ଅପକର୍ମ କରି ଅମ୍ଳାନ ବଦନରେ ତାହା ସ୍ୱୀକାର ପୂର୍ବକ ସବୁ କାଳ ପାଇଁ ତାକୁ ବର୍ଜନ କରିବା ପାଇଁ ସଂକଳ୍ପବଦ୍ଧ ହେବା ହିଁ ନୈତିକ ସାହସର ପରିଚୟ ।

ଅପକର୍ମ ଧରାପଡ଼ିଲେ ଦଣ୍ଡରୁ ନିଷ୍କୃତି ଲାଭ ନିମିତ୍ତ କ୍ଷମାଭିକ୍ଷା କରିବା ତାଙ୍କ ମତରେ ଯେମିତି କାପୁରୁଷତା, ସ୍ୱାର୍ଥପରତା ଓ ଭୀରୁତା । କ୍ଷମା ମଗାଯାଏ ନାହିଁ, କ୍ଷମା ମିଳିଥାଏ । କେତେବେଳେ ? ଯେତେବେଳେ ଛାତ୍ର ନୈତିକ ସାହସ ନେଇ ନିଜର ଦୁର୍ବଳତା ବା ଅପକର୍ମ ଅକୁଣ୍ଠିତ ଚିତ୍ତରେ ସ୍ୱୀକାର କରେ ଓ ଜୀବନରେ ଆଉ ତାକୁ ସ୍ଥାନ ନ ଦେବାକୁ କୃତ ସଂକଳ୍ପ ହୋଇଥାଏ । ଏହି ମହନୀୟ ନୀତିଟି ଆଚାର୍ଯ୍ୟ ମହାଶୟଙ୍କ ଠାରୁ ଛାତ୍ରମାନେ ଶିଖିବାକୁ ପାଇଥିଲେ । ଏହିପରି ନୈତିକ ସାହସରେ ବଳୀୟାନ ଛାତ୍ରକୁ ଦଣ୍ଡଦେବା ପରିବର୍ତ୍ତେ ଆଲିଙ୍ଗନ କରିବାକୁ ହୋଇ-ଥାଏ । ଏହା ହିଁ ତା'ର କ୍ଷମା । କେବଳ ସେତିକି ନୁହେଁ, ଦୁଃସ୍ଥ ଛାତ୍ର ମାନଙ୍କର ଅଭାବ ଅସୁବିଧା ଦୂରକରିବା ପାଇଁ ସେ ସର୍ବଦା ପ୍ରସ୍ତୁତ ଥିଲେ ।



# ଭଲ ମଣିଷ ହୁଅ

## ସତ୍ୟବାଦୀ ବିଦ୍ୟାଳୟରେ ଆଗ୍ରହ

—୪—

ପ୍ରାୟ ୫ ବର୍ଷ ଏକାଡେମୀରେ ସୁଦକ୍ଷତା ଓ ସୁନାମର ସହିତ ଶିକ୍ଷକତା କରି ହରିହର ସତ୍ୟବାଦୀ ସ୍କୁଲରେ ମାସିକ ପ୍ରାୟ ୨୫ ଟଙ୍କା ବେତନରେ ଯୋଗଦେଲେ । ସେତେବେଳକୁ କେବଳ ନୀଳକଣ୍ଠ ଓ ରାମଚନ୍ଦ୍ର ଥାନ୍ତି । ଏଥିରେ ଆଶାନ୍ୱିତ ହୋଇ ଗୋପବନ୍ଧୁ 'Satyabadi Report'ରେ ଉଲ୍ଲେଖ କରିଥିଲେ । "Another worker Babu Harihar Das, then so well known in Cuttack for his ability and success as a teacher in the P. M. Academy, resigned his post there and entered our staff." ଏକାଡେମୀରେ ସେ ମାସକୁ ୪୫ ଟଙ୍କା ବେତନ ପାଉଥିଲେ ଏବଂ ଟ୍ୟୁସନ୍‌ରୁ ମାସକୁ ୯୦ ଟଙ୍କା ପର୍ଯ୍ୟନ୍ତ ବି ପାଉଥିଲେ । ସେତେବେଳକୁ ସତ୍ୟବାଦୀ ସ୍କୁଲର ଦୁରବସ୍ଥା କହିଲେ ନ ସରେ । ସ୍ଥାନୀୟ ବ୍ରାହ୍ମଣ ଓ ଅନ୍ୟମାନେ ସତ୍ୟବାଦୀ ଗୋଷ୍ଠୀର ସାମାଜିକ ବିପ୍ଳବରେ ଉତ୍ୟକ୍ତହୋଇ ଦେଉଳ ପଛଆଡ଼େ ତିଆରି ହୋଇଥିବା ପ୍ରକାଣ୍ଡ ଗୃହଘରେ ନିଆଁ ଲଗାଇ ଦେଲେ । ସ୍କୁଲର ଆସବାବପତ୍ର, ଟଙ୍କା-ପଇସା ଏବଂ ବିଶେଷତଃ 'ହରିହର ଲାଇବ୍ରେରୀ' ପୋଡ଼ି ପାଉଁଶ ହୋଇଗଲା । ଯାହାଁକି ବ୍ରାହ୍ମଣ 'ପଣ୍ଡିତମାନେ ଏପରି ଗୋଟିଏ ନୃଶଂସ କାର୍ଯ୍ୟ କଲେ, ସେ ସମ୍ବନ୍ଧରେ ପୁରୀର ତତ୍କାଳୀନ ମାଜିଷ୍ଟ୍ରେଟ୍ ଶ୍ରୀ ରମାବଲ୍ଲଭ ମିଶ୍ର ଲେଖିଥିଲେ— "The roof of the school house has been destroyed by fire only recently; and the mystery as to how it

caught fire has not yet been and will never be cleared up. The most valuable loss that the school has incurred by the mishap is that of its library, which, it is said, was worth Rs. 1000.

I was pleased to notice the spirit of self-help among the executive of the school. The classes are now being held under the shade of the trees near the school house and the work of teaching is going on as if nothing has happened."

ରମାବଲ୍ଲଭ କହନ୍ତି—"ଏ ସବୁ, ଅନୁଷ୍ଠାନରେ କିଏ ନିଆଁ ଲଗାଇଦେଲା, ତାହା ଧରାପଡ଼ିବ ନାହିଁ । ପୁସ୍ତକାଗାରର ପ୍ରାୟ ଟ ୧୦୦୦ର ବହି ଜଳି ପୋଡ଼ି ପାଉଁଶ ହୋଇଗଲା । ତଥାପି ସ୍କୁଲର ସମ୍ପାଦକ ଓ ଶିକ୍ଷକଗଣ ସମସ୍ତେ ତ୍ୟାଗ ଓ କଷ୍ଟରେ ଦୃଢ଼ସଂକଳ୍ପ । ସେମାନେ ଯେ କୌଣସି ମତେ ଏଠାରେ ସ୍କୁଲଟିଏ ଗଢ଼ିବେ । ଦୁଃଖ ଓ ନୈରାଶ୍ୟ ତାଙ୍କ ଜୀବନରେ ନାହିଁ ।" ଏହାର ପରବର୍ଷ ଯେତେବେଳେ ଗୋଦାବରୀଶ ମିଶ୍ର ଆସି ଶିକ୍ଷକରୂପେ ଯୋଗଦେଲେ ସେତେବେଳେ ହରିହର ଓ ତାହାଁ ସଙ୍ଗେ ସଙ୍ଗେ ଗୋଦାବରୀଶଙ୍କୁ ପାଇ ଗୋପବନ୍ଧୁ ଓ ନୀଳକଣ୍ଠଙ୍କର ଦମ୍ଭ ଓ ସାହସ ବହୁ ଗୁଣ ବଢ଼ିଗଲା । ସେମାନେ ହାଇସ୍କୁଲର ତୃତୀୟ ଓ ଦ୍ୱିତୀୟ ଶ୍ରେଣୀ ଖୋଲିଦେଲେ । ଛାତ୍ର ସଂଖ୍ୟା ହୁ ହୁ ହୋଇ ବଢ଼ିଗଲା । ଗୋଦାବରୀଶ ତାଙ୍କ ଆତ୍ମ ଚରିତରେ ଲେଖିଛନ୍ତି—"ଅର୍ଥାଗମର ବହୁ ସୁବିଧା ଓ ସୁଯୋଗ ମୋତେ ଛାଡ଼ିବାକୁ ପଡ଼ିଛି । ମୋ କକ୍ଷଚ୍ୟୁତି ପୂର୍ବାପୂର ମୋ ନଜର ନୁହେଁ । ତା' ସକାଶେ ଗୋପବନ୍ଧୁବାବୁ ବହୁ ପରିମାଣରେ ଦାୟୀ । ତାଙ୍କର ପ୍ରରୋଚନାରେ ମୁଁ ଏସବୁ ସୁଯୋଗ ଛାଡ଼ିଛି । ଏ ଭବ ପାରାବାରରେ ମୋ କ୍ଷୁଦ୍ର ଜୀବନ-ତରୀର କର୍ଣ୍ଣଧାର ସେ । ମୋର ପ୍ରାଣର ଉପାସ୍ୟ ଦେବତା । ଦୁର୍ବଳ ମୁହୂର୍ତ୍ତମାନଙ୍କରେ ଆଜି ସୁଦ୍ଧା ମୁଁ ତାଙ୍କର ମୂର୍ତ୍ତି ଆଖି ଆଗରେ କଳ୍ପନାରେ ଦେଖି ସାନ୍ତ୍ୱନା ପାଏ । ଗୋପବନ୍ଧୁଙ୍କ ପରି ସୁହୃଦ୍, ପଥ ପ୍ରଦର୍ଶକ ଓ ଦାର୍ଶନିକ ଗୁରୁ ନିତାନ୍ତ ବିରଳ ।

ମନୁଷ୍ୟ, ଜୀବନରେ ସର୍ବସ୍ୱ ହରାଇ, ଦାଣ୍ଡରେ ଭିକାରୀ ହେବ ତ, ହେବ ଗୋପବନ୍ଧୁଙ୍କ ପରି ପୁରୁଷଙ୍କ ସଙ୍ଗରେ ପଡ଼ି । ଗୋପବନ୍ଧୁବାବୁଙ୍କ ଆଶୀର୍ବାଦ ପାଇ ନ ଥିଲେ ଏହି ଦୁଇ ଘଟଣା ପରେ ସୁଦ୍ଧା ମୁଁ ହୁଏତ ଓକିଲ ହୋଇଥାନ୍ତି । କିମ୍ବା ଅନ୍ୟ ଏକ କାର୍ଯ୍ୟ କରିଥାନ୍ତି ।"

ଏ କଥା ଯେପରି ଗୋଦାବରୀଶଙ୍କ ମୁହଁରୁ ବାହାରିଛି, ଠିକ୍ ସେହିପରି ଭାବରେ ହରିହରଙ୍କ ମୁହଁରୁ ଅନେକ ସ୍ଥାନରେ ବାହାରିବାର ତାଙ୍କର ଶତ ଶତ ଛାତ୍ର ଶୁଣିଅଛନ୍ତି । ଦୈବ ଦୌଡ଼, ମଣିଷ ଗାଈ । ସେହିପରି ମନ୍ତ୍ରଗୁରୁ ହରିହରଙ୍କୁ ଯେଉଁ ଆଡ଼କୁ ଟାଣିଛନ୍ତି, ସେ ସେହି ଆଡ଼କୁ ଯାଇଛନ୍ତି । ଯେଉଁ ଆଦର୍ଶ ଭାର୍ଗବୀ ନଦୀ କୂଳରେ ନିର୍ଜନ ଚନ୍ଦ୍ରପକ୍ଷ ରାତିରେ ଉଦିତ ହୋଇଥିଲା, ତାହା କ୍ରମେ କ୍ରମେ ମାଲଗିରି ଓ ଏକା-ଡେ଼ମୀରେ ଅଙ୍କୁରିତ ହୋଇ ସତ୍ୟବାଦୀରେ ଗୋଟିଏ ମହାଦ୍ରୁମରେ ପରିଣତ ହେଲା ।

ସତ୍ୟବାଦୀ ଗୋଟିଏ ତୀର୍ଥସ୍ଥାନ । ଏହା ସହିତ ପ୍ରାଚୀନ ଉତ୍କଳ ଇତିହାସର ସଂପର୍କ ଅଛି । ପ୍ରାଚୀନ ଉତ୍କଳର ଗଜପତି ପୁରୁଷୋତ୍ତମଦେବ ଯେଉଁ ଶ୍ରୀକୃଷ୍ଣ ମୂର୍ତ୍ତି କାଞ୍ଚିରୁ ବିଜୟ ଗୌରବରେ ଆଣିଥିଲେ, ସେହି ଶ୍ରୀକୃଷ୍ଣ ମୂର୍ତ୍ତି ଏହି ସ୍ଥାନରେ ବିଦ୍ୟମାନ ଅଛନ୍ତି । ଏହା ଖ୍ରୀଷ୍ଟାବ୍ଦ ପଞ୍ଚଦଶ ଶତାବ୍ଦୀର କଥା ଏବଂ ସର୍ବ ଶେଷରେ—'It is the centre of many populous Brahman villages where the people are extremely conservative. But their opinions and sentiments, more or less, influence the social life of Orissa.' ଅର୍ଥାତ୍ ଏହା କେତେଗୁଡ଼ିଏ ଜନାକୀର୍ଣ୍ଣ ବ୍ରାହ୍ମଣ ଶାସନର କେନ୍ଦ୍ରଭୂମି । ଏଠାରେ ଲୋକମାନେ ବଡ଼ ରକ୍ଷଣଶୀଳ । କିନ୍ତୁ ସେମାନଙ୍କର ମତ ଏବଂ ଭାବନାରାଜି ଓଡ଼ିଶାର ସାମାଜିକ ଜୀବନକୁ ଅଳ୍ପ ବହୁତ ପ୍ରଭାବିତ କରିଥାଏ ।

ତେଣୁ ଭକ୍ତ କବି ମଧୁସୂଦନ ରାଓଙ୍କ ଅନୁରୋଧ ଅନୁସାରେ ସତ୍ୟବାଦୀ ମନ୍ଦିରର ପଛପଟେ ବିରାଟ ତାଳ, ତମାଳ, କୁରିଅନା ପୂର୍ଣ୍ଣ ସୁରମ୍ୟ କାନନରେ ସତ୍ୟବାଦୀ ସ୍କୁଲ ଆରମ୍ଭ କରାଗଲା ।

'୧୯୧୩ ମସିହା ଶେଷ ଆଡ଼କୁ ସେ ବର୍ଷ ନୀଳକଣ୍ଠ ବାବୁଙ୍କର ନାମ ହେଡ଼ମାଷ୍ଟର ଏବଂ ବୋର୍ଡିଂ ସୁପରିନ୍‌ଟେଣ୍ଡେଣ୍ଟ ହୋଇଗଲା । ହରିହରଙ୍କୁ 'ଆଚାର୍ଯ୍ୟ' ଉପାଧି ଦିଆଯାଇଥିଲା । ସେ ଛାତ୍ରାବାସର ସମସ୍ତ ଭଲମନ୍ଦର ଭାର ନେଇଥିଲେ । ତାଙ୍କର ସ୍ୱଭାବ ସୁଲଭ ସେବାପରାୟଣତା ଯୋଗୁଁ ସେ ଛାତ୍ରାବାସକୁ ଗୃହପରି କରିପକାଇଥିଲେ ।'

( ସତ୍ୟବାଦୀରେ ସାତବର୍ଷ—ଚନ୍ଦ୍ରଶେଖର ମିଶ୍ର )

ଏ ସମ୍ପର୍କରେ ସତ୍ୟବାଦୀରେ ତାଙ୍କର ଅନ୍ତରଙ୍ଗ ସହକର୍ମୀ ଓ ଆତ୍ମୀୟ ସ୍ୱଜନପରି ତାଙ୍କର ସଂସାର ନିର୍ବାହର ସମସ୍ତ ଦାୟିତ୍ୱ ବହନ କରିଥିବା ଆଚାର୍ଯ୍ୟଙ୍କର ପରମ ଆଦରଣୀୟ ବନ୍ଧୁ ଶ୍ରୀ ଗୋଦାବରୀଶ ମିଶ୍ର ଉଲ୍ଲେଖ କରିଅଛନ୍ତି :—"ସେଦିନ ସନ୍ଧ୍ୟାରେ ଗୋପବନ୍ଧୁବାବୁ ଶିକ୍ଷକ-ମାନଙ୍କର ବୈଠକ ଡକାଇଲେ । ସେ ବୈଠକରେ ନାନା ଆଲୋଚନା ପରେ କେତେକ ନିର୍ଦ୍ଧାରଣ କରାଗଲା । ସେ ଅନୁସାରେ ପ୍ରଧାନ ଶିକ୍ଷକ ପଦ ଉଠିଗଲା ଏବଂ ହରିହରବାବୁଙ୍କୁ ସର୍ବୋଚ୍ଚ ସ୍ଥାନ ଦିଆଯାଇ 'ଆଚାର୍ଯ୍ୟ' ପଦରେ ଅଭିଷିକ୍ତ କରାଗଲା । ଆଜିକାଲି ଅଟଳ ବିହାରୀ ଆଚାର୍ଯ୍ୟ, ଡାକ୍ତର ସୁରେନ୍ଦ୍ର ନାରାୟଣ ଆଚାର୍ଯ୍ୟ, ପରମାନନ୍ଦ ଆଚାର୍ଯ୍ୟ ପ୍ରଭୃତି ଓଡ଼ିଶାରେ କେତେକ ବିଶିଷ୍ଟ ଲୋକ ଅଛନ୍ତି । କିନ୍ତୁ ନାମ ବାଦଦେଇ କେବଳ 'ଆଚାର୍ଯ୍ୟ' କହିଲେ ସତ୍ୟବାଦୀ ସ୍କୁଲର ସେକାଳର ହରିହର-ବାବୁଙ୍କୁ ବୁଝାଉଛି । ସେଦିନ ସତ୍ୟବାଦୀ ସ୍କୁଲ ବୈଠକରେ ତାଙ୍କୁ ଯେ 'ଆଚାର୍ଯ୍ୟ' ଉପାଧି ଦିଆଯାଇଥିଲା, ଏହା ତାହାରି ଫଳ । ଏବେ ତାଙ୍କୁ ସମକକ୍ଷ ଲୋକମାନେ କେବଳ 'ଆଚାର୍ଯ୍ୟ' ବୋଲି କହନ୍ତି । ପିଲାଙ୍କ ଭିତରେ ତାଙ୍କ ନାମ ଆଚାର୍ଯ୍ୟ ମହାଶୟ ।"

ଏହା ପ୍ରାୟ ୧୯୧୮ ମସିହା ଶେଷଭାଗର କଥା । ସେହି ବୈଠକରେ ଅନେକ ତର୍କ ବିତର୍କ ପରେ ସ୍ଥିର ହେଲା, ଆଚାର୍ଯ୍ୟ ମହାଶୟ ସ୍କୁଲର ହେଡ୍‌ମାଷ୍ଟର ହେବେ । କେହି କେହି ବୁଝିପାରନ୍ତି, ସେହି ୧୯୧୮ ମସିହାରୁ ସେ 'ଆଚାର୍ଯ୍ୟ' ପଦରେ ଭୂଷିତ ହେଲେ । କିନ୍ତୁ ତାହା ନୁହେଁ । ସେ ଏହାର ଚାରି ପାଞ୍ଚବର୍ଷ ପୂର୍ବରୁ ଗୋପବନ୍ଧୁଙ୍କ ଦ୍ୱାରା

ଆଚାର୍ଯ୍ୟ ପଦରେ ଭୂଷିତ ହୋଇ ଛାତ୍ରାବାସର ସମସ୍ତ କାର୍ଯ୍ୟ ସୁଚାରୁରୂପେ ପରିଚାଳନା କରୁଥିଲେ ।

ସତ୍ୟବାଦୀ ସେତେବେଳେ ଥିଲା ସକ୍ରିୟ ସଂସ୍କାରର ଭିତ୍ତିଭୂମି । ନୀଳକଣ୍ଠଙ୍କର 'ନଶ' ଆନ୍ଦୋଳନ ପୁରୀର ମୁକ୍ତିମଣ୍ଡପ ଓ ନିକଟବର୍ତ୍ତୀ ବ୍ରାହ୍ମଣ ଶାସନମାନଙ୍କରେ ଗୋଟିଏ ମହା ବିଶୃଙ୍ଖଳା ସୃଷ୍ଟି କରିଥିଲା । ସତ୍ୟବାଦୀ ସ୍କୁଲର ବ୍ରାହ୍ମଣ ଶିକ୍ଷକମାନେ ସାକ୍ଷୀଗୋପାଳ ମନ୍ଦିର ପଛପଟେ ମାଛ, ମାଂସ ଭୋଜନ କରୁଥିଲେ । ଏଠାରେ ଜାତିଧର୍ମ ନିର୍ବିଶେଷରେ ପଂକ୍ତି ଭୋଜନ ପ୍ରଚଳନ କରାଯାଇଥିଲା । ୧୯୧୪ ମସିହାରେ 'ହରିମଳିକ' ନାମରେ ଜଣେ ଛାତ୍ର ଅନ୍ୟାନ୍ୟ ପିଲାମାନଙ୍କ ସହ କେବଳ ଛାତ୍ରାବାସରେ ରହୁ ନ ଥିଲା, ସେ ମଧ୍ୟ ପଂକ୍ତି ଭୋଜନରେ Dining hallରେ ଅନ୍ୟ ଛାତ୍ରମାନଙ୍କ ସହିତ ବସି ଖାଉଥିଲା । ଏହି କୁସଂସ୍କାରମାନ ଦୂରକରି ସମାଜରେ ନାନା ପ୍ରକାର ଭେଦଭାବ ପରିବର୍ଜନ କରିବାରେ ନୀଳକଣ୍ଠ ଓ ହରିହର ପ୍ରଭୃତି ଅଗ୍ରଣୀଥିଲେ । ରକ୍ଷଣଶୀଳ ବ୍ରାହ୍ମଣମାନେ ଏହି ସଂସ୍କାରର ପ୍ରଥମ ଧକ୍କା ସହି ନ ପାରି ସ୍କୁଲକୁ ଛାଡ଼ି ଦେଇଥିଲେ ।

ମହାତ୍ମାଗାନ୍ଧିଙ୍କର 'ହରିଜନ' ଆନ୍ଦୋଳନ ପ୍ରାୟ ୧୯୩୫ ମସିହାରେ ଆରମ୍ଭ ହୋଇଥିଲା । କିନ୍ତୁ ଓଡ଼ିଶାରେ ୧୯୧୪ ମସିହାରୁ ସତ୍ୟବାଦୀରୁ ଏହି ଆନ୍ଦୋଳନର ସୂତ୍ରପାତ ହୋଇଥିଲା ବୋଲି ବୁଝିବାକୁ ହେବ । ଜଣେ ବିଜ୍ଞ ଲେଖକ ଏହି 'ହରିଜନ' ଆନ୍ଦୋଳନ ବିଷୟରେ ଉଲ୍ଲେଖ କରିଅଛନ୍ତି, "ଗାନ୍ଧିଜୀଙ୍କ ପ୍ରବର୍ତ୍ତିତ 'ହରିଜନ' ଆନ୍ଦୋଳନ ଯେତେବେଳେ ଓଡ଼ିଶାରେ ଆରମ୍ଭ ହେଲା ଆଚାର୍ଯ୍ୟ ହରିହର ତାହାର ନେତୃତ୍ୱ ନେଲେ । ତାଙ୍କ ଭଳି ଜଣେ ଧର୍ମପରାୟଣ, ନିଷ୍ଠାପର, ସଚ୍ଚରିତ୍ର, ଶାସ୍ତ୍ରବିତ୍ ବ୍ରାହ୍ମଣ ନେତୃତ୍ୱ ନେବାରୁ ଓଡ଼ିଶାର 'ହରିଜନ' ଆନ୍ଦୋଳନର ମହତ୍ତ୍ୱ ଆରମ୍ଭରୁ ହିଁ ବଢ଼ିଗଲା । ୧୯୩୪ରେ ବ୍ୟାପକଭାବରେ ଓଡ଼ିଶାରେ ଅସ୍ପୃଶ୍ୟତା ନିବାରଣ ଆନ୍ଦୋଳନ ଚାଲିଲା । କାରଣ ମହାତ୍ମାଗାନ୍ଧୀ ପୁରୀଠାରୁ ଭଦ୍ରଖ ପର୍ଯ୍ୟନ୍ତ ପଦଯାତ୍ରା କରି ଅସ୍ପୃଶ୍ୟତା ବିରୋଧରେ ସ୍ୱର ଉତ୍ତୋଳନ କରିଥିଲେ । ତାଙ୍କର ଏହି ପଦଯାତ୍ରାର କାହାଣୀ ସମଗ୍ର ଭାରତରେ ପ୍ରଚାରିତ ହୋଇ-

ଥିଲା । ସେତିକବେଳେ ଓଡ଼ିଶାର ଲୋକେ ଗର୍ବର ସହିତ ଗୋଟିଏ ବିଷୟରେ ଉଲ୍ଲେଖ କରୁଥିଲେ । ମହାତ୍ମାଗାନ୍ଧି ଭାରତରେ ସାଧାରଣ କ୍ଷେତ୍ରକୁ ଆସିବା ପୂର୍ବରୁ ହରିହର ( ସେତେବେଳକୁ ଆଚାର୍ଯ୍ୟ ହୋଇ ନ ଥିଲେ ) ତଥାକଥିତ ଅସ୍ପୃଶ୍ୟମାନଙ୍କୁ ଆପଣାର କରିବାକୁ ବା ଅନ୍ୟ ଭାବରେ କହିବାକୁ ଗଲେ ସେମାନଙ୍କ ପ୍ରତି ନ୍ୟାୟ ପ୍ରଦର୍ଶନ କରିବା ପାଇଁ ଆଗଭର ହେଉଥିଲେ । ଥରେ ଜଣେ ଅସହାୟ ହରିଜନ ଲୋକ ମରିଗଲା । କେତେଜଣଙ୍କୁ ସଙ୍ଗରେ ନେଇ ହରିହର ତା' ଶବକୁ ଦାହ କରାଇଦେଲେ । ବ୍ରାହ୍ମଣମାନେ ତାଙ୍କୁ ଜାତିରୁ ଅଟକ କରିବା ପାଇଁ ବାହାରିଲେ । ସେଥିପାଇଁ ସଭା ବସିଲା । ସଂସ୍କୃତ ଟୋଲର ପଣ୍ଡିତ ମନୁ-ସଂହିତା ବାହାର କରି ସେଥିରୁ ଉଦ୍ଧାର କରି ଦେଖାଇଦେଲେ ଯେ ଅନାଥ ଶବ ସତ୍କାର କଲେ ଅଶ୍ୱମେଧ ଯଜ୍ଞର ଫଳ ମିଳେ । ତେଣୁ ହରିବାବୁ ପ୍ରଭୃତି ଯେତେବେଳେ ଗୋଟାଏ ଅନାଥର ଶବଦାହ କରିଛନ୍ତି, ସେମାନେ ପାପ ତ କରି ନାହାଁନ୍ତି—ବରଂ ବହୁ ପୁଣ୍ୟ ଅର୍ଜନ କରିଛନ୍ତି ।

ମାଳକଣ୍ଠ ଓ ଆଚାର୍ଯ୍ୟ ହରିହରଙ୍କ ଚେଷ୍ଟାରେ ପ୍ରାଚୀନ ଭାରତୀୟ ଗୁରୁକୁଳ ଆଶ୍ରମ ଭିତରେ ସତ୍ୟବାଦୀ ବିଦ୍ୟାଳୟ ପରିଚାଳିତ ହେଉଥିଲା । "ଭିତ୍ତି ଭାରତୀୟ, ଓ ଶିକ୍ଷା ପାଶ୍ଚାତ୍ୟ ଭାବଧାରାରେ ପ୍ରଭାବିତ ।" ତେଣୁ ଗୁରୁକୁଳ ଆଶ୍ରମର ଚାଲିଚଳଣି, ଆଚାର ବିଚାର, ଯଥା ସମ୍ଭବ ଏହିଠାରେ ରଖାଯାଇଥିଲା । ଛାତ୍ର ଓ ଶିକ୍ଷକ ଏକ ପରିବାର ପରି । ମାଳକଣ୍ଠ ଗୁରୁକୁଳ ଆଶ୍ରମ ଓ ନାଳନ୍ଦା ବିଶ୍ୱବିଦ୍ୟାଳୟର ଶିକ୍ଷା ଓ ସଂସ୍କୃତ ବିଷୟରେ ତନ୍ନ ତନ୍ନ ଭାବରେ ଅଧ୍ୟୟନ କରି ତାହାଦ୍ୱାରା ଅନୁପ୍ରାଣିତ ହୋଇଥିଲେ । ଉପନିଷଦରେ ବର୍ଣ୍ଣିତ ଅଛି, ଛାତ୍ରର ଗୁରୁଙ୍କଠାରେ ବିଦ୍ୟା ଶେଷହେଲେ ସେ ସେମାନଙ୍କୁ ଏକତ୍ରିତ କରି ଗମ୍ଭୀର ସ୍ୱରରେ ଏହି ଆଦେଶ ଓ ଉପଦେଶ ଦେଉଥିଲେ, 'ଦେବ ପିତୃ କାର୍ଯ୍ୟାଭ୍ୟାମ୍ ନ ପ୍ରମଦିତବ୍ୟମ୍, ମାତୃ ଦେବୋଭବ, ପିତୃଦେବୋଭବ, ଆଚାର୍ଯ୍ୟ ଦେବୋଭବ, ଅତିଥି-ଦେବୋଭବ । ଯାନ୍ୟ ନ ବଦାନି କର୍ମାଣି, ତାନି ସେ ବିତବ୍ୟାନି × × × ଶ୍ରଦ୍ଧୟା ଦେୟଂ, ଅଶ୍ରଦ୍ଧୟାଽଦେୟଂ, ଶ୍ରୀୟା ଦେୟଂ, ହ୍ରିୟା ଦେୟଂ, ଭିୟା ଦେୟଂ, ସଂବିଦା ଦେୟଂ ।' ଅର୍ଥାତ୍ ତୁମର ଦେବତା

ଏବଂ ପିତୃପୁରୁଷମାନଙ୍କୁ ସ୍ମରଣ କର । ଜନନୀକୁ ବାରମ୍ବାର ପ୍ରଣାମ କର । ତାଙ୍କୁ ଦେବତା ସଦୃଶ ମନେକର । ତୁମର ଶିକ୍ଷକ ମହାଶୟଙ୍କୁ ଭଗବାନ ରୂପେ ଜ୍ଞାନ କର । ତୁମ ଗୃହାଗତ ଅତିଥିଙ୍କୁ ସାକ୍ଷାତ ଈଶ୍ୱର ବୋଲି ମନେକର । ତାଙ୍କର ସେବା ପୂଜାରେ ମନ ଦିଅ । ଶ୍ରଦ୍ଧାର ସହିତ ଦରିଦ୍ର-ମାନଙ୍କୁ ଦାନ କର । ଅଶ୍ରଦ୍ଧାର ସହିତ ନୁହେଁ । ଆନନ୍ଦ ଓ ନମ୍ରତାର ସହିତ ଦାନ କର । ଅନୁକମ୍ପାର ସହିତ ନିରନ୍ନ ଲୋକମାନଙ୍କୁ ଅନ୍ନ ବିତରଣ କର । କାରଣ ଉପନିଷଦରେ ଆଉ ଗୋଟିଏ ମନ୍ତ୍ର ଅଛି — "ବହୁ ଅନ୍ନଂ କୁର୍ବୀତ" । 'ଆର୍ଯ୍ୟଜୀବନ'ର ପ୍ରଣେତା ନୀଳକଣ୍ଠ ଉପନିଷଦର ଏହି ମନ୍ତ୍ରଗୁଡ଼ିକୁ ଆଚାର୍ଯ୍ୟ ହରିହରଙ୍କ ସମ୍ମୁଖରେ ବାରମ୍ବାର ଆବୃତ୍ତି କରି କହୁଥିଲେ —

"ତୁଂଭେ ଦେବ ପ୍ରକାଶିଛ ଦିଗଦିଗଂତରେ,
ତୁଂଭେ ଆଦି ତୁଂଭେ ଅଂତ,
ଜନ୍ମର କାରଣ ତୁଂଭେ ସର୍ବଭୂତେ ଜାତ,
ଚରାଚର ବିଶ୍ୱ, ଦେବ ଅଂତରାଳେ ରହି,
ପ୍ରକାଶିଛ ଆହେ ବିଶ୍ୱମୁଖ ।"

ଏହି ପାବନ ମନ୍ତ୍ରରେ ଅଭିମନ୍ତ୍ରିତ ହୋଇ ହରିହର 'ଆଚାର୍ଯ୍ୟ' ପଦ ଗ୍ରହଣ କରିଥିଲେ ।

ଆଉ ଜଣେ ଲେଖକ ଏ ସମ୍ବନ୍ଧରେ ଲେଖିଥିଲେ, "ଆଚାର୍ଯ୍ୟ ପଦ ପାଇଁ କେବଳ ହରିହର ଯେ ସାର୍ଥକ ହେଲେ ତା' ନୁହେଁ, ହରିବାବୁଙ୍କୁ ପାଇ 'ଆଚାର୍ଯ୍ୟ' ପଦ ତା'ର ଅନେକ ଗୁଣ ଅଧିକ ସାର୍ଥକ ହେଲା । ଯିଏ ପାଠ ପଢ଼ାନ୍ତି, ଆମର ଚଳନ୍ତି ଭାଷାରେ ଆମେ ତାହାଙ୍କୁ ହିଁ 'ଆଚାର୍ଯ୍ୟ' ବୋଲି କହୁ । ଯିଏ ଚାଟ ଧରି ବସନ୍ତି ଓ ଚାଣ୍ଟ ଅର୍ଥାତ୍ କ୍ଷମତା ଧରି ଅଧିକ ବିଦ୍ୟାକୁ ଧରି ରଖିଥିବାର ହାକିମି ଦେଖାନ୍ତି, ଆମେ ତାଙ୍କୁ ଆଚାର୍ଯ୍ୟ ବୋଲି କହୁ । ଆଚାର୍ଯ୍ୟ କହିଲେ ଏହି ଶିକ୍ଷକକୁଳ ବା ମାଷ୍ଟରକୁଳଙ୍କୁ ବୁଝୁ । 'ଆଚାର୍ଯ୍ୟ' ଶବ୍ଦଟି ସଂସ୍କୃତ 'ଚର' ଧାତୁରୁ ନିଷ୍ପନ୍ନ ହୋଇ ଆସିଛି । 'ଚର' ଅର୍ଥାତ୍ ଚାଲିବା, ତେଣୁ 'ଆଚାର୍ଯ୍ୟ'

ଅର୍ଥାତ୍ ନିଏ ବାଟ ଚାଲୁଛନ୍ତି, ନିଜେ ବାଟଚାଲି, ଚାଲିବାର ପ୍ରେରଣା ଦେଉଛନ୍ତି, ନିଜର ଖାଲି ଶାସ୍ତ୍ରୀୟ ବ୍ୟୁତ୍ପତ୍ତିଗତ ବ୍ୟାଖ୍ୟା ଅନୁସାରେ ନୁହେଁ, ଆଧୁନିକ ଶିକ୍ଷା ବିଜ୍ଞାନ ଏବଂ ବିଚାରର ସଂକ୍ରମଣର ମନୋବିଜ୍ଞାନ ଅନୁସାରେ ମଧ୍ୟ ଶିକ୍ଷକ ବା ଆଚାର୍ଯ୍ୟ କହିଲେ ମୂଳତଃ ଆପେ ସତତ ଶିଖିବାରେ ଲାଗିଥିବା ଅର୍ଥାତ୍ ଆପେ ସତତ ବାଟ ଚାଲିବାରେ ଲାଗିଥିବା ଜଣେ ବ୍ୟକ୍ତିଙ୍କୁ ହିଁ ବୁଝାଏ ।"

ଆଚାର୍ଯ୍ୟଙ୍କର ପଦପଦ୍ମରେ ଶ୍ରଦ୍ଧାଞ୍ଜଳି ନିବେଦନ କରିବାକୁ ଯାଇ ଉପସ୍ଥିତ ଲେଖକ 'ଆଚାର୍ଯ୍ୟ ପରିକ୍ରମା' ବହିରେ ଉଲ୍ଲେଖ କରିଥିଲେ, ଯେଉଁଦିନ ନିର୍ମଳ ଶୁଭ୍ର ବାସନ୍ତୀ ରଜନୀରେ ଗୋପବନ୍ଧୁଙ୍କ ଗ୍ରାମ ନିକଟବର୍ତ୍ତୀ ଉପରେ ଚାରି ଜଣ ଯୁବାପୁରୁଷ ଏକତ୍ରିତ ହୋଇ ଭାବାବେଶରେ କଠୋର ସଂକଳ୍ପ କରିଥିଲେ, 'ସରକାରୀ ଚାକିରୀ କରିବା ନାହିଁ, ନିଜର ଭରଣ ପୋଷଣ ବିଳାସରେ ମନଦେବା ନାହିଁ, ଜନ୍ମ ହୋଇ ଦେଶକୁ ଯାହା ଦେଖିଥାଇ, ମଲାବେଳେ ତା'ଠାରୁ ଉନ୍ନତତର ଅବସ୍ଥାରେ ଛାଡ଼ିଯିବା ଓ ସେଥିପାଇଁ ବରାବର ପ୍ରଯତ୍ନରେ ରହିବା' ସେହି ଚିର-ସ୍ମରଣୀୟ ଦିବସଠାରୁ ଆମରଣ ଦେଶକୁ ଉନ୍ନତତର ଅବସ୍ଥାରେ ଦେଖିବା ପାଇଁ ନିରନ୍ତର ପ୍ରଯତ୍ନଶୀଳ ଆଚାର୍ଯ୍ୟ ହରିହରଙ୍କର ଜୀବନ ଅତ୍ୟନ୍ତ ସାଧନାଶୀଳ ଏବଂ କୃଚ୍ଛ୍ର, ବ୍ରହ୍ମଚର୍ଯ୍ୟର ଅସିଧାର ବ୍ରତ ଉପରେ ପ୍ରତିଷ୍ଠିତ ହୋଇଥିଲା । 'ସଂସାରର ସୁଖ କ'ଣ ସେ ମୋଟେ ଉପଲବ୍ଧି କରି ନାହାଁନ୍ତି । ନିଜର ପରିବାର ଅବଶ୍ୟ ଥିଲା । କିନ୍ତୁ ସେ ପାରିବାରିକ ଜଞ୍ଜାଳରେ କଦାପି ଆବଦ୍ଧ ହୋଇ ନାହାଁନ୍ତି । ତାଙ୍କର ପିତା ଜୀବିତ ଥିବା ସମୟରେ ଏବଂ ତାଙ୍କ ମୃତ୍ୟୁର ଅଳ୍ପ କେତେଦିନ ଉତ୍ତାରେ ସେ ଘରର ବିବାହ ଓ ବ୍ରତ ଇତ୍ୟାଦି ଉତ୍ସବରେ ଯୋଗଦେଇଛନ୍ତି ସତ, କିନ୍ତୁ ତାହା 'ପଦ୍ମପତ୍ର ମିବାମ୍ଭସା' — ଅତ୍ୟନ୍ତ ନିର୍ଲିପ୍ତ ଓ ନିରାସକ୍ତ ଭାବରେ ଜନ୍ମ ହୋଇ ଦେଶକୁ ଯାହା ଦେଖିଥାଇଁ ମଲାବେଳେ ତା'ଠାରୁ ଉନ୍ନତତର ଅବସ୍ଥାରେ ଛାଡ଼ିବା ଓ ସେଥିପାଇଁ ପ୍ରଯତ୍ନ ରହିବା, ଏହି ଦୃଢ଼ ପ୍ରତିଜ୍ଞାବାଣୀ ହରିହରଙ୍କ ମନପ୍ରାଣକୁ ଅଧିକାର କରି ବସିଥିଲା ।

ବର୍ତ୍ତମାନ ସତ୍ୟବାଦୀ ସ୍କୁଲ ଓ ଆଚାର୍ଯ୍ୟ ହରିହରଙ୍କ ମଧ୍ୟରେ ବ୍ୟବଧାନର କୌଣସି ସୀମାରେଖା ନାହିଁ । ଏହିଠାରେ ଜନ-ସେବାରେ ପ୍ରାଣକୁ ଉତ୍ସର୍ଗୀକୃତ କରିବାକୁ ହେବ ।

ସତ୍ୟବାଦୀ ସ୍କୁଲରେ ଆଚାର୍ଯ୍ୟଙ୍କ କାର୍ଯ୍ୟକଳାପର ସୀମା ନାହିଁ । ତାଙ୍କର ରହିବା ଘରଟି ଗୋପବନ୍ଧୁଙ୍କ ମୃତ୍ୟୁଶଯ୍ୟା ପ୍ରକୋଷ୍ଠରେ । ସେହି ଘରଟି ଅବଶ୍ୟ ଆଜି ସେହିପରି ଅବସ୍ଥାରେ ନାହିଁ । ତା'ର ରୂପାନ୍ତର ଘଟିଛି । କିନ୍ତୁ ସେହି ଚେନାଏ ଜାଗା ଆଜି ହରିବାବୁଙ୍କ ଅବସ୍ଥାନ ଓ ଗୋପବନ୍ଧୁବାବୁଙ୍କ ମୃତ୍ୟୁ ଯୋଗୁଁ ଅମର ଓ ଅକ୍ଷୟ ହୋଇ ରହିଅଛି । ଏହି ପ୍ରକୋଷ୍ଠର ବାରଣ୍ଡାଟି ଗୋଟିଏ ତ୍ରିଭୁଜାକାର କ୍ଷେତ୍ର ପରି । ପ୍ରକୋଷ୍ଠ ମଧ୍ୟରେ ଆଚାର୍ଯ୍ୟଙ୍କର ଖଣ୍ଡେ ଦିଖଣ୍ଡ ଅତି ସାଧାରଣ ଆସବାବପତ୍ର, ଖଣ୍ଡେ ଭଙ୍ଗା ଦଦରା ଟ୍ରଙ୍କ୍ ଏବଂ ଆଉ ଗୋଟିଏ ଅଲଗୁଣୀ ସେଥିରେ ଅତି ଶୁଭ୍ର ଓ ପରିଷ୍କାର ପରିଚ୍ଛନ୍ନ ଲୁଗା ଓ କମିଜ୍ କେତେଖଣ୍ଡ ଥାଏ । କିନ୍ତୁ ବର୍ଷକ ବାର ଋତୁଟା କଟିଯାଏ ସେହି ବାରଣ୍ଡାରେ । ପ୍ରସାରିତ ଓ ସୁତୀକ୍ଷ୍ଣ ଦୃଷ୍ଟି ରହିଥାଏ । ଚତୁର୍ଦ୍ଦିଗରେ ବିସ୍ତାରିତ ହୋଇ ରହିଥିବା ଛାତ୍ରାବାସର ବ୍ଲକମାନଙ୍କରେ—A, B, C, 'D' Blockଟି ଅବଶ୍ୟ ସିଦ୍ଧବକୁଳଙ୍କ ପାଖରେ । ହରିବାବୁଙ୍କ ବସାଠାରୁ ପ୍ରାୟ ଦୁଇ ଫର୍ଲଙ୍ଗ ଦୂର । ତଥାପି କିଏ କେତେବେଳେ ଆସି ଡାକିବ, ସେଥିପାଇଁ ପ୍ରସ୍ତୁତଥିବା ଦରକାର । ତା'ପରେ ନିକଟବର୍ତ୍ତୀ ଛାତ୍ରାବାସରୁ କେତେବେଳେ କେଉଁ ବଖରାରୁ ଆକସ୍ମିକ ଡକରା ଆସିବ, ତା' ବା କିଏ କହି ପାରିବ ? ସମସ୍ତଙ୍କ ଉପରେ ଆଚାର୍ଯ୍ୟଙ୍କର ସଜାଗ ଦୃଷ୍ଟି । ଶିଷ୍ୟମାନଙ୍କର ସେବା କରିବା ନିମନ୍ତେ ସର୍ବଦା ତତ୍ପର ।

ଆଚାର୍ଯ୍ୟ ମହାଶୟ ପିଲାମାନଙ୍କର ପାଠ ପଢ଼ା ଦେଖିବାଠାରୁ Sick Room ରେ ସେମାନଙ୍କର କାଛକୁଣ୍ଡିଆ ଧୋଇବା ପର୍ଯ୍ୟନ୍ତ ସବୁ କାମ ନିପୁଣତାର ସହିତ କରିଥାନ୍ତି । ଭଗୀରଥିଙ୍କ ପ୍ରବଳ ଜ୍ୱର ଓ ଶୋଥ ହେଲେ ତ, ଆଚାର୍ଯ୍ୟଙ୍କ ଆଖିକୁ ନିଦ ନାହିଁ । କଳାହାଣ୍ଡିରୁ ନୂଆ ହୋଇ ଆସିଥିବ । ବଂଶୀର ହଇଜା ହେଲା ତ, ହରିବାବୁ ହୋମିଓ-

ପ୍ୟାଥିକ୍ ଔଷଧ ବାକ୍ସ ଧରି ତା ପାଖରେ ହାଜର । ଛାତ୍ରମାନଙ୍କର ସୁଖ ଶାନ୍ତିରେ ନିଜର ଆତ୍ମାକୁ ମିଶାଇ ଦେଇ ହରିବାବୁ ଆପଣାର ସୁଖ-ଦୁଃଖ ଠିକ୍କ ମଧ୍ୟ ବିସ୍ମୃତ ହୋଇଯାଉଥିଲେ ।

ଆଚାର୍ଯ୍ୟଙ୍କ କର୍ତ୍ତବ୍ୟର ପରିଧି ନିର୍ଦ୍ଦିଷ୍ଟ ହୋଇ ରହିଥିଲା ଏହିପରି,—

(କ) ଛାତ୍ରମାନଙ୍କୁ ଘଣ୍ଟାକରୁ ଅଧିକ ସମୟ ପର୍ଯ୍ୟନ୍ତ ଛୁଟିଦେବା ।

(ଖ) ଛାତ୍ରାବାସରେ କିଏ କେଉଁ ବଖରାରେ ଏବଂ ନିର୍ଦ୍ଦିଷ୍ଟ ଭାବରେ କେଉଁ ସ୍ଥାନରେ ରହିବ ତାହା ସ୍ଥିର କରିବା । ମନିଟର ନିର୍ବାଚନରେ ମୁଖ୍ୟ ଅଂଶ ଗ୍ରହଣ କରିବା । କିଏ କେଉଁ ବଖରାରେ ମନିଟର ହେବ, ତାହା ବୁଝିବା and see to the proper tending, nursing and treatment of patients in the hostel ଅର୍ଥାତ୍ ଛାତ୍ରାବାସରେ କେହି ଛାତ୍ର ରୋଗାକ୍ରାନ୍ତ ହେଲେ, ସେମାନଙ୍କର ସେବା ସୁଶ୍ରୂଷାର ସମୁଚିତ ବ୍ୟବସ୍ଥା କରିବା ।

(ଗ) ବ୍ଲକ୍ ଶିକ୍ଷକ ଏବଂ ମନିଟରମାନଙ୍କ କାର୍ଯ୍ୟକଳାପ ତତ୍ତ୍ୱାବଧାନ କରିବା । ଅତ୍ୟନ୍ତ ଜଟିଳ ବିଷୟମାନଙ୍କ ସମ୍ବନ୍ଧରେ ଏମାନଙ୍କ ସହିତ ପରାମର୍ଶ କରିବା ।

ସତ୍ୟବାଦୀ ବନ ବିଦ୍ୟାଳୟର ଅନନ୍ୟ ବୈଶିଷ୍ଟ୍ୟ ଥିଲା ଏହାର ଜନସେବା କାର୍ଯ୍ୟ । ଏହାର ପୁରୋଧା ଗୋପବନ୍ଧୁ ଥିଲେ ଜନସେବାର ମୂର୍ତ୍ତି ପ୍ରତୀକ । ଏହାର ପ୍ରଧାନ ଶିକ୍ଷକ ନୀଳକଣ୍ଠ ଦାଶ ଥିଲେ ନିକଟବର୍ତ୍ତୀ ଗ୍ରାମମାନଙ୍କରେ ହଇଜାରେ ଆକ୍ରାନ୍ତ ହୋଇପଡ଼ିଥିବା ଲୋକମାନଙ୍କର ପରମ ଆଶ୍ରୟ ସ୍ଥଳ । ଲୋକେ ତାହାକୁ ନ ଦେଖି କାଳେ ଔଷଧ ନ ପାଇ ଫେରିଯିବେ ବୋଲି ଯେଉଁ ନୀଳକଣ୍ଠ ସର୍ବସ୍ୱ ତ୍ୟାଗୀ ଶିକ୍ଷକ ରାମଚନ୍ଦ୍ର-ରଥଙ୍କ ସହିତ ଲଣ୍ଠନ ଜାଳି ଘୋର ବର୍ଷା ମଧ୍ୟରେ ବାହାରେ ଶୋଉଥିଲେ, ଏହି ହେଉଛନ୍ତି ସେହି ସେବା ପରାୟଣ ସତ୍ୟବାଦୀ ସ୍କୁଲର ପ୍ରଧାନ ଶିକ୍ଷକ । ଗୋପବନ୍ଧୁଙ୍କ ପ୍ରରୋଚନାରେ ହରିହର ଯାଇଥିଲେ ରଥଯାତ୍ରା ସମୟରେ

ଯାତ୍ରୀମାନଙ୍କର ସେବା କରିବା ନିମନ୍ତେ । ୧୯୧୩ ମସିହାର ରଥଯାତ୍ରା । ତାଙ୍କ ସେବାକାର୍ଯ୍ୟରେ ଅତ୍ୟନ୍ତ ପ୍ରୀତ ହୋଇ ସେ ସମୟର ଜିଲ୍ଲା କଲେକ୍ଟର ଶ୍ରୀ ରମାବଲ୍ଲଭ ମିଶ୍ର ଉଲ୍ଲେଖ କରିଥିଲେ,—

"Your volunteers did splendid work yesterday for which I am very thankful. ତୁମ୍ଭର ସ୍ୱେଚ୍ଛା ସେବକମାନେ କାଲି ଯେଉଁ ଚମତ୍କାର ସେବା କାର୍ଯ୍ୟ କଲେ, ସେଥିପାଇଁ ମୁଁ କୃତଜ୍ଞ ।" ଏହି କୃତଜ୍ଞତା କେବଳ ଆଚାର୍ଯ୍ୟ ହରିହରଙ୍କର ପ୍ରାପ୍ୟ । ସେ ଏହି ବିଦ୍ୟାଳୟର ସ୍ୱେଚ୍ଛାସେବକମାନଙ୍କର ନେତାରୂପେ ପୁରୀକୁ ଯଠା- ହୋଇଥିଲେ । ସେ ନୀଳକଣ୍ଠ, ଗୋଦାବରୀଶ, କମ୍ବା କୃପାସିନ୍ଧୁଙ୍କ ପରି ମନୀଷୀ, କବି କମ୍ବା ଐତିହାସିକ ନ ଥିଲେ । ସେ ଥିଲେ ସାହିତ୍ୟ ପ୍ରେମୀ । ସାହିତ୍ୟର ମାଧୁରୀ ତାଙ୍କର ପ୍ରାଣକୁ ସ୍ପର୍ଶ କରୁଥିଲା, ତାଙ୍କର ମର୍ମଦେଶକୁ ଝଙ୍କାରିତ କରୁଥିଲା, ତାହା ନ ହୋଇଲେ ସେ କାହିଁକି ଗୀତା ଉପରେ ଲେଖମାଳା ରଚନା କରିଥାନ୍ତେ ? ଉପନିଷଦର ଓଡ଼ିଆ ଅନୁବାଦ ବା କାହିଁକି କରିଥାନ୍ତେ ? କାହିଁକି ବା ସେ ଏକ ଧ୍ୟାନରେ ଟ୍ରେନିଂ ସ୍କୁଲ୍‌ର ଶିକ୍ଷକମାନେ ବସିଥିବା ଆସନରେ ବସି ନୀଳକଣ୍ଠଙ୍କ 'ଶିକ୍ଷା କ'ଣ' ବକ୍ତୃତାର ଶେଷ ଅଂଶଟି ଶୁଣି ଆନନ୍ଦରେ ଗଦ୍ ଗଦ୍ ଓ ଚମତ୍କୃତ ହୋଇ ସଭାରେ ଉପସ୍ଥିତ ହୋଇଥିବା ଶ୍ରୋତୃମଣ୍ଡଳୀ ଉପରେ ସସ୍ନେହ ଦୃଷ୍ଟିପାତ କରିଥାନ୍ତେ ?

"ତୁମ୍ଭେ ଭାରତର ଋଷିକୁଳର ଅବତଂସ । ତୁମ୍ଭର ପୂର୍ବ ପୁରୁଷ ପୃଥିବୀକି ଜ୍ଞାନାଲୋକ ଦେଇଥିଲେ । ମନେରଖ ସେହି ସତ୍‌ଶିକ୍ଷା ସରଳ ସତ୍ୟତା ଏବଂ ସାଧୁ ମନୁଷ୍ୟତା ପୃଥିବୀରେ ପ୍ରତିଷ୍ଠିତ କରିବା ତୁମ୍ଭ ପକ୍ଷରେ ବଡ଼ ଗହନ କଥା ନୁହେଁ । ଏହା ତୁମ୍ଭର ପୈତୃକ ସମ୍ପତ୍ତି । ଏଥିପାଇଁ ତୁମ୍ଭଙ୍କୁ ଅନ୍ୟଦେଶକୁ ଯିବାକୁ ହେବ ନାହିଁ । ଦ୍ୱାରେଦ୍ୱାରରେ ଭିକ୍ଷା କରିବାକୁ ହେବ ନାହିଁ । ଏହା ତୁମ୍ଭ ରକ୍ତମାଂସରେ ରହିଅଛି । ସେ କଥା ମନେରଖି ଜୀବନରେ ପ୍ରସ୍ତୁତ ହୁଅ । ଜ୍ଞାନପାଇଁ ବିଦ୍ୟାର୍ଥୀ ହୁଅ । ମନୁଷ୍ୟତା ପାଇଁ ଗୁରୁଙ୍କଠାରେ ଆତ୍ମସମର୍ପଣ କର । ବାବୁ, ଦିନ ଆସିବ,

ଯେଉଁଦିନ ତୁମେ ପ୍ରକୃତରେ ଜ୍ଞାନମାତା ଭାରତ ଭୂମିର ଋଷିକୁଳ ସନ୍ତତିବୋଲି ଗର୍ବର ସହିତ ଅନୁଭବ କରିବାକୁ ସମର୍ଥ ହେବ ।”

'ଶିକ୍ଷା କ'ଣ' ଏହି ବକ୍ତୃତାର ପ୍ରତ୍ୟେକ ବାକ୍ୟ ତାଙ୍କର ପ୍ରାଣସ୍ପର୍ଶୀ ହୋଇଥିଲା । ଜ୍ଞାନ ପାଇଁ ବିଦ୍ୟାର୍ଥୀ ହୁଅ, ଏହି ପ୍ରାଚୀନ ଭାରତୀୟ ଆଦର୍ଶରେ ଆଚାର୍ଯ୍ୟ ଅନୁପ୍ରାଣିତ ହୋଇ ଛାତ୍ରମାନଙ୍କୁ ମଣିଷ କରୁଥିଲେ । ତାଙ୍କର ଅଧ୍ୟାପନାର ପ୍ରଣାଳୀ ଥିଲା ବଡ଼ ମନୋମୁଗ୍‌ଧକର ଏବଂ ଆକର୍ଷଣୀୟ । ଶ୍ରେଣୀକୁ ଆସିଲେ ଆସ୍ତେ ଆସ୍ତେ ପଢ଼ାଇବସନ୍ତି ଅଙ୍କ କିମ୍ବା ଜ୍ୟାମିତି । ଯଦି କିଏ ଘରୁ ଅଙ୍କ କଷି ଆସି ନାହିଁ, କି ୧୫ ଖଣ୍ଡରୁ ୨, ୪ ଖଣ୍ଡ ମାତ୍ର ଅଙ୍କ କଷିକରି ଆସିଛି, ସେ ଯଦି ଛାତ୍ରାବାସରେ ରହୁଥାଏ, ତାକୁ ହରିବାବୁ କୋମଳ ଗମ୍ଭୀର ଅନୁକମ୍ପାମୟ ଓ ସଂବେଦନାପୂର୍ଣ୍ଣ କଣ୍ଠରେ କହନ୍ତି,—“ଆରେ, ତୋତେ ଅଙ୍କ କଷିବାକୁ ବେଳ କାହିଁ ? ତୁ ଆଜି ସକାଳୁ କେତେଥର ତୋ ରୁମ୍‌ରୁ ଡାଇନିଂଗ ହଲ୍‌କୁ ଯିବା ଆସିବା କରିଛୁ ? ଗଣି କରି ମୋତେ କହିପାରିବୁ ?” ବେଶ୍ ସେତିକ । ଆଉ କୌଣସି ଭର୍ତ୍ସନା କିମ୍ବା କର୍କଶ ବାଣୀର ପ୍ରୟୋଜନୀୟତା ନାହିଁ । ତହିଁ ପରଦିନଠାରୁ ସେ ଅଙ୍କତକ ସବୁ କଷି ଆସିଥିବ । ସେ ଥରେ ୭ମ ଶ୍ରେଣୀକୁ ପଢ଼ାଇବା ପାଇଁ ଆସିଥାନ୍ତି । କ୍ଲାସରେ ବସିବା ତାଙ୍କ ଜାତକରେ ନାହିଁ । ବୁଲୁବୁଲୁ ଦେଖିଲେ ଜଣକ ହାତରେ ନଖ ସବୁ କୋଡ଼ପରି ହୋଇଛି । କ୍ଲାସର ସବୁ ପିଲାଙ୍କ ନଖ ଦେଖିସାରି, ମୃଦୁ କଣ୍ଠରେ କହିଲେ, “ଯେଉଁ ଛାତ୍ର ତାର ନଖସବୁ ସରୁ ଓ ପାତଳା କରି କାଟି ନ ଥିବ, ତାର ସ୍ୱାସ୍ଥ୍ୟରକ୍ଷା କ୍ଲାସକୁ ଆସିବାର କି ଅଧିକାର ଅଛି ?” ଜ୍ୟାମିତି ପଢ଼ାଇବାରେ ଦକ୍ଷତା ତାଙ୍କପରି କେତେଜଣ ଶିକ୍ଷକଙ୍କର ସେତେବେଳେ ଥିଲା ? ସମ୍ପାଦ୍ୟକୁ ଉପପାଦ୍ୟ କରି ଏବଂ ଉପପାଦ୍ୟକୁ ସମ୍ପାଦ୍ୟ କରି ବ୍ୟାସ କବି ଫକୀରମୋହନ ତାଙ୍କ ଉପନ୍ୟାସରେ ରଙ୍ଗ ଓ ରହସ୍ୟର ଖେଳାଇଲାପରି ଆଚାର୍ଯ୍ୟ ହରିହର ଖେଳାଇ ଖେଳାଇ ପିଲାମାନଙ୍କୁ ଜ୍ୟାମିତି ପଢ଼ାନ୍ତି ।

ଜଣେ କୃତବିଦ୍ୟ ଲେଖକ ୧୯୭୩ ମସିହାରେ ପ୍ରକାଶିତ 'ଆଚାର୍ଯ୍ୟ ପରିକ୍ରମା' ପୁସ୍ତକରେ ଉଲ୍ଲେଖ କରିଅଛନ୍ତି, “ସତ୍ୟବାଦୀ

ବିଦ୍ୟାଳୟ ସମ୍ପର୍କରେ ଲେଖିଲା ବେଳେ (ସେମାନେ ଏହି ବିଦ୍ୟାଳୟ ସମ୍ବନ୍ଧରେ ପ୍ରତ୍ୟକ୍ଷ ଜ୍ଞାନ ଓ ଗଭୀର ଅନୁଭୂତି ଥିବା ବ୍ୟକ୍ତିମାନେ) କେବଳ ଆଗେ ସେଠାରେ ରହିଥିବା ବେଳର ସ୍ମୃତି ଗୁଡ଼ିକର ଉଦ୍‌ଗାର କଲେ, କେବଳ ସ୍ମୃତି ବାହୁନିଲେ । ତେଣୁ କାଳକ୍ରମେ ସତ୍ୟବାଦୀ ପ୍ରଧାନତଃ ଏକ ସ୍ମୃତି ପୀଠ ହୋଇ ରହିଲା । ପ୍ରେରଣାର ଏକ ଉତ୍ସ ହୋଇ ରହିପାରିଲା ନାହିଁ ।" କବିବର ରାଧାନାଥ ତାଙ୍କ ନନ୍ଦିକେଶ୍ୱରୀ କାବ୍ୟରେ ନନ୍ଦିକାଙ୍କ ମୁଖରେ ଲେଖିଛନ୍ତି,—

"ସ୍ମୃତି ତ କଦାପି ନୁହେଁ ଫିଙ୍ଗିବାର
ଫିଙ୍ଗି ପାରିଲେ ମୁଁ ପାଆନ୍ତି ନିସ୍ତାର ।"

ସେଭଳି ସେତେବେଳର ସତ୍ୟବାଦୀ ବିଦ୍ୟାଳୟର ଅଭିଜ୍ଞତା ଯାହାର ଅଛି ତା ପ୍ରତି ସତ୍ୟବାଦୀ ବିଦ୍ୟାଳୟ ଏବେ ସୁଦ୍ଧା ଇତିହାସରେ ପରିଣତ ହୋଇ ନାହିଁ । ଏହି ବିଦ୍ୟାଳୟକୁ ପୁନର୍ଜୀବିତ କରିବା ନିମନ୍ତେ ସେତେବେଳର ମୁଖ୍ୟମନ୍ତ୍ରୀ ସତ୍ୟବାଦୀ ବନବିଦ୍ୟାଳୟର ପୁରାତନ ଛାତ୍ର ଓ ଓଡ଼ିଶାର ବିଶିଷ୍ଟ ଶିକ୍ଷାବିତ୍‌ମାନଙ୍କୁ ନେଇ ସତ୍ୟବାଦୀ ବକୁଳବନରେ ଗୋଟିଏ ବିରାଟ ସଭାର ଆୟୋଜନ କରିଥିଲେ । ଏହି ସଭାରେ ସର୍ବ ସମ୍ମତିକ୍ରମେ ସ୍ଥିର ହେଲା ଯେ ପ୍ରାଚୀନ ଗୁରୁକୁଳ ଆଶ୍ରମ ପରି କିମ୍ବା ବୋଲ୍‌ପୁରର ଶାନ୍ତିନିକେତନ ଢାଞ୍ଚାରେ ଅଥବା ଗୋପବନ୍ଧୁଙ୍କ ଆଦର୍ଶରେ ନୋହିଲେ ଦାକ୍ଷିଣାତ୍ୟର ପୁନା କଲେଜ ପରି ଏଠାରେ ଗୋଟିଏ ବିଦ୍ୟାଳୟ ପୁନର୍ବାର ସ୍ଥାପନା କରାଯାଉ । ଓଡ଼ିଶା ସରକାର ଏଥିରେ ଯଥା ସାଧ୍ୟ ସାହାଯ୍ୟ କରିବେ । ସ୍ମୃତିର ଉପାଦାନ ଯୋଗାଇ ଦେବାକୁ ଶିକ୍ଷକ ଓ ଛାତ୍ରମାନଙ୍କର ଅଭାବ ନାହିଁ । ନୀଳକଣ୍ଠ, ଗୋଦାବରୀଶ, ଆଚାର୍ଯ୍ୟ ହରିହର ଏବଂ ସାହିତ୍ୟିକ ବାସୁଦେବ ପ୍ରଭୃତି ଏବେ ମଧ୍ୟ ଅଛନ୍ତି । ସେମାନଙ୍କଠାରୁ ଯଥେଷ୍ଟ ଇଙ୍ଗିତ ଓ ପ୍ରେରଣା ମିଳିପାରିବ । ସେତିକିବେଳକୁ ଏମାନେ ସମସ୍ତେ ଜୀବିତ ଥିଲେ । କିନ୍ତୁ ସେହି ପ୍ରସ୍ତାବ କାର୍ଯ୍ୟରେ ପରିଣତ ହୋଇପାରିଲା ନାହିଁ । ସତ୍ୟବାଦୀ ସ୍କୁଲ ସ୍ମୃତି ପୀଠ ହୋଇ ରହିଲା । କିନ୍ତୁ ଦେଶବାସୀଙ୍କର ପ୍ରେରଣାର ସ୍ରୋତ ଶୁଷ୍କ ହୋଇ ଯାଇଥିଲା । ବର୍ତ୍ତମାନ ଅଧିକାଂଶ ଶିକ୍ଷିତ ଲୋକଙ୍କର ଆଭିମୁଖ୍ୟ ହେଲା ରାଜନୀତି କିମ୍ବା

ସାଧୁ ଏବଂ ଅସାଧ ଉପାୟରେ ବିପୁଳ ଅର୍ଥ ସମାଗମର ଉପାୟ ଅନୁସନ୍ଧାନ ।

ସତ୍ୟବାଦୀର ଗୋଷ୍ଠୀ ପ୍ରାଚୀନ ଭାରତୀୟ ଶିକ୍ଷା-ଜ୍ଞାନ ଓ ସଂସ୍କୃତିର ଯେଉଁ ନୂତନ ଆଲୋକ ଓ ପନ୍ଥା ଦର୍ଶାଇଥିଲେ, ତାହା ପୂରାପୂରି ଭାବରେ ଲୋକେ ଭୁଲିଗଲେ । ସମସ୍ତେ କେବଳ ଗୋଟିଏ ସ୍ୱର ଧରିଲେ, "କେବଳ ଆଗକୁ ମାଡ଼ିଚାଲ, ପଛକୁ ମୁହଁ ଫେରାଅ ନାହିଁ । ଆଉ ଅତୀତର ଉଦ୍‌ବୋଧନରେ କି ଫଳ ?"

ଉପନିଷଦର ଏହି ମନ୍ତ୍ରକୁ 'ଚରୈବେତି', 'ଚରୈବେତି' ଅର୍ଥରେ ଗ୍ରହଣ କରାଯାଇପାରେ । ସତ୍ୟବାଦୀ ବନବିଦ୍ୟାଳୟ ପାଇଁ ଏବେ ସୁଦ୍ଧା ଆଧୁନିକ କବିମାନଙ୍କର ହୃଦୟ ବିଦାରି ହେଉଛି । କିନ୍ତୁ ସତ୍ୟବାଦୀପରି ବିଦ୍ୟାଳୟଟିଏ କରିବାକୁ ସେମାନଙ୍କର ସାମର୍ଥ୍ୟ କାହିଁ ? ତେଣୁ ସେମାନେ ପ୍ରାଣର ବ୍ୟାକୁଳତାରେ କେବଳ ଗାଇଛନ୍ତି ।

"ଶର ଶଯ୍ୟାରେ, ଶାୟିତ ଶସ୍ତିର ମହା ନିର୍ବାଣ ବାର୍ତ୍ତା କହେ, ମହାଚେତନାର ଉଜ୍ଜ୍ୱଳ ଶିଖା ଅପସରି······ଗଲା······ମୃତ୍ୟୁ ନୁହେଁ ।

ସାକ୍ଷୀଗୋପାଳର ଛୁରିଆନା ତଳେ
ପଞ୍ଚ ପ୍ରଦୀପ ଜଳିବ ଭୂତଳେ ।

ସତ୍ୟବାଦୀର ସୌରଭ ଶିର୍, ଗୁରୁ ଗୌରବ, ବ୍ୟର୍ଥ ନୁହେଁ । କରୁଣାସିକ୍ତ କରେ—ପବିତ୍ର ପାତ୍ର ଆଦରେ ଟେକିଲା ସିଏ, କଣ୍ଠ ଥରାଇ, ମନ୍ତ୍ର ଝଙ୍କାଇ, କୋଟି ଜନମନ ଛୁଇଁଲା ସିଏ ।"

—ଶ୍ରୀମତୀ ମନୋରମା ମହାପାତ୍ର
'ପଞ୍ଚ ପ୍ରଦୀପ ଜଳ ଉଠୁବାରେ'

ବକୁଳ ବନର ପୂତ ବିଦ୍ୟାଳୟ
ଛାତ୍ର ସେବା ଶିକ୍ଷାଦାନେ ରଖି ଲୟ
ଜାତି ଲାଗି କେତେ ଦେଶପ୍ରେମି ଗଣ
ଗଢିଦେଲେ କାମେ ରସିରେ
ଏ ଦେଶର ଜଣେ ଋଷି

—ଶ୍ରୀ ମନୋରଞ୍ଜନ ଦାସ
'ଯୁଗଋଷି'

କିନ୍ତୁ ଏ ପ୍ରଦୀପ ଜଳିଉଠିବ କିପରି ? ଅଗ୍ନି ସଂଯୋଗ କରିବ କିଏ ? କିଏ ସେ ବା ନୀଳକଣ୍ଠ ଓ ଆଗ୍ୟଂ ହରିହରଙ୍କ ପରି କର୍ମକ୍ଷେତ୍ରରେ ଛାତ୍ରମାନଙ୍କୁ ଉପଦେଶ ଦେଇ ତାହା ଯଥାସାଧ୍ୟ କାର୍ଯ୍ୟରେ ପରିଣତ କରିବାକୁ ଚେଷ୍ଟା କରିବ ? କୌଣସିପରି ମନେଅଛି ନୀଳକଣ୍ଠ ଗୁରୁକୁଳ ସମ୍ମିଳନୀରେ 'ଚରିତ୍ର ହିଁ ପରଂ ବଳଂ' ବକ୍ତୃତାରେ କହିଥିଲେ,—

"ଅନନ୍ତ ବିଶ୍ୱ ଇଚ୍ଛାମୟଙ୍କର ଅନନ୍ତ ଲୀଳା । ଏହା ପ୍ରେମ ପୂର୍ଣ୍ଣ । ସେହି ପ୍ରେମରୁ ଉଠିଲେ ଲଭି ମାନବର ଆତ୍ମା ଜୀବନ୍ତ । ମାନବ ସେ ପ୍ରେମ ବିଶ୍ୱରେ ଦେଖେ ଏବଂ ଅନୁକରଣ କରେ । ସେହିଥିପାଇଁ ସମାଜ, ଜାତି, ପରିବାର ପ୍ରଭୃତିରେ ସେ ଆତ୍ମାକୁ ବିସ୍ତୀର୍ଣ୍ଣ ଦେଖେ । ବିଧାତାଙ୍କର ଅନନ୍ତ କରୁଣା ଅନୁକରଣ କରି ସେ ଜୀବନରେ ଦୟାକରେ । ତୁମ୍ଭେ ବଡ଼ ହେଲେ ବୁଝିବ, ବର୍ତ୍ତମାନ ହୁଏତ ଜାଣିଥିବ ତୁମ୍ଭେ ଭଲ ମନୁଷ୍ୟ ହେଲ ; ସମାଜ ଓ ଜାତିରେ ନଜର ନିଯୁକ୍ତ ସ୍ଥିର କଲ । ତଥାପି ବି ଏକ ଅଭାବ ଯେପରି ପ୍ରାଣରେ ରହିଗଲା । ସେହି ଅଭାବର କ୍ଷୀଣ ମାନବ ପ୍ରାଣରେ ନିତ୍ୟ ଏବଂ ସେହି ସୂତ୍ରରେ ସେ ଦେବତା ହେବାକୁ ଯାଏ । ବିଶ୍ୱତନ୍ତ୍ରରେ ମିଶିଯିବାକୁ ଆକାଂକ୍ଷା ରଖେ । ଆପାତ ପ୍ରବୃତ୍ତି ଚରିତାର୍ଥ କରି ସେ ଯେଉଁ ସୁଖ ପାଏ, ଚରିତ୍ର ଗଠିତ ହୋଇଉଠିଲେ ସେ ସେଥିରେ ଆଉ ପ୍ରୀତି ପାଏ ନାହିଁ । ସେ କୌଣସି ଜାଗାରେ ଯେପରିକି କି ଏକ ଅଦ୍ଭୁତ ଶାନ୍ତ ଓ ଦିବ୍ୟ ଆନନ୍ଦର ଅପେକ୍ଷାରେ ତାହାର ଆତ୍ମା ଉନ୍ମୁକ୍ତ ରହିଅଛି ।

ପ୍ରାଣ ଫେଡ଼ ଦେଖି ପାରିଲେ ସମସ୍ତେ ବୁଝିବେ ସତ୍ୟ କହିବା, ସତ୍ କାର୍ଯ୍ୟ କରିବା, ପର ପାଇଁ ପ୍ରାଣ ଦେବା, ଜୀବନକୁ ଉପଯୋଗୀ କରିବା ପ୍ରଭୃତି ସବୁଥିରେ ମାନବର ସେହି ଅନନ୍ତ ଶାଶ୍ୱତ ଶାନ୍ତି ଓ ଆନନ୍ଦ ଲଭର ଉଦ୍ୟମ । ଆତ୍ମା ସର୍ବଦା ସେ ଶାନ୍ତିର ଆଗମ ଲୋଡ଼ୁ ଅଛି । ସେହି ଆନନ୍ଦ ପାଇବ ବୋଲି କର୍ମ କରୁଅଛି । ଅନନ୍ତ ବିଚିତ୍ର ବିଶ୍ୱରେ ବିଧାତାଙ୍କୁ ଦେଖି, ବିଧାତାଙ୍କ ସଙ୍ଗେ ଏକ ହୋଇଯିବାକୁ ଯେପରି ବ୍ୟଗ୍ର ରହିଛି । ସେହି ଶାନ୍ତି, ସେହି ଆନନ୍ଦ ପାଇବା ପାଇଁ ଯୋଗୀମାନେ ଚିର ତପସ୍ୟା କରନ୍ତି । ସେଥିପାଇଁ ମନୁଷ୍ୟ ଭଲ ମନୁଷ୍ୟ ହୁଏ । ଶେଷରେ ସେହି ଭଲମନୁଷ୍ୟତା-ହିଁ ଜୀବନର ଉଦ୍ଦେଶ୍ୟ । ତାହାର ନାମ ମୁକ୍ତି । ତାହାହିଁ ପ୍ରତ୍ୟେକ ମାନବର ଚରମ ଲକ୍ଷ୍ୟ । ଏ ଉଦ୍ଦେଶ୍ୟ ଥରେ ହସ୍ତଗତ ହେଲେ, ଏ ଚରିତ୍ର ସ୍ଥିରହେଲେ, ଇଚ୍ଛା ଆଉ ଅନ୍ୟ ଦିଗରେ ଯାଏ ନାହିଁ । ମାନବ ନିର୍ବିକଳ୍ପରେ କର୍ମ କରିଯାଏ, ଫଳାଫଳକଥା ଭାବେ ନାହିଁ ।" ସେତିକ-ବେଳେ ସେ ହୃଦୟ ଖୋଲି କହିପାରେ,—

"ତ୍ୱୟା ହୃଷୀକେଶ ହୃଦି ସ୍ଥିତେନ
ଯଥା ନିଯୁକ୍ତୋସ୍ମି ତଥା କରୋମି ।"

ଏହାହିଁ ହେଉଛି ସତ୍ୟବାଦୀ ବନବିଦ୍ୟାଳୟର ମୂଳ ପ୍ରଦୀପ । କିନ୍ତୁ ଆଧୁନିକ ଯୁବପ୍ରାଣକୁ ଏହା ଜାଗ୍ରତ ଓ ଅନୁପ୍ରାଣିତ କରିପାରୁ ନାହିଁ । ଏହାର ପ୍ରେରଣା ଶିକ୍ଷିତ ବ୍ୟକ୍ତିମାନଙ୍କୁ ତନ୍ମୟ କରୁନାହିଁ । ସତ୍ୟବାଦୀ ବନବିଦ୍ୟାଳୟର ବଡ଼ ଦୁର୍ଭାଗ୍ୟର ବିଷୟ ଏହା ମୋଟେ ୧୦,୧୨ ବର୍ଷ ମଧ୍ୟରେ ଲୋପ ପାଇଗଲା । ଏ ବିଲୋପର କାରଣ ହେଲା ମହାତ୍ମା ଗାନ୍ଧିଙ୍କ ପ୍ରବର୍ତ୍ତିତ ଅସହଯୋଗ ଆନ୍ଦୋଳନ ।

# ଭଲ ମଣିଷ ହୁଅ

— ୪ —

## ( ସତ୍ୟବାଦୀ ବିହାର ଓ ଅସହଯୋଗ ଆନ୍ଦୋଳନ )

ସ୍କୁଲର ଜଣେ ଅନ୍ତରଙ୍ଗ ସହଯୋଗୀ ଓ କବିପ୍ରାଣ ୬ ଗୋଦାବରୀଶ ମିଶ୍ର ତାଙ୍କ ଆତ୍ମଚରିତରେ ଲେଖିଛନ୍ତି, "ଆଜି ମନେହୁଏ ଯେ ସେ ସତ୍ୟବାଦୀ ସ୍କୁଲ ଯଦି ଥାନ୍ତା ଏବଂ ମୋର ଏ ୬୭ ବର୍ଷ ବୟସରେ ସୁଦ୍ଧା ମୁଁ ସେଠାରେ ସେହି ସେବାକାର୍ଯ୍ୟ କରୁଥାନ୍ତି। ୧୯୨୧ ମସିହାର ଭାରତବ୍ୟାପୀ ରାଜନୈତିକ ଆନ୍ଦୋଳନର ସମୟରୁ ମୁଁ ନାନା କ୍ଷେତ୍ରରେ କାର୍ଯ୍ୟ କରିଛି, କିନ୍ତୁ ସେ ମଧ୍ୟରୁ କୌଣସି କ୍ଷେତ୍ରରେ ମୁଁ ସତ୍ୟବାଦୀ ସ୍କୁଲରେ କାର୍ଯ୍ୟ କରିବାର ଆନନ୍ଦ ଓ ଶାନ୍ତି ଅନୁଭବ କରି ନାହିଁ।"

କିନ୍ତୁ ୧୯୧୯ ମସିହା ଫେବୃୟାରୀ ମାସ ୭ ତାରିଖ ସନ୍ଧ୍ୟାରେ ସେ ସିଂହଭୂମି ଜିଲ୍ଲାର ଚକ୍ରଧରପୁର ହାଇସ୍କୁଲର ହେଡ଼ମାଷ୍ଟରରୂପେ ନିଯୁକ୍ତ ହୋଇ ସାକ୍ଷୀଗୋପାଳରୁ ବିଦାୟ ନେଲେ। ସେ ଯିବା ପୂର୍ବରୁ ଲେଖିଛନ୍ତି, "ଆଚାର୍ଯ୍ୟତ ହେଡ଼ମାଷ୍ଟର ହେଲେ ଏ ସମ୍ପର୍କରେ ୧୯୧୯ରେ ଗୋପବନ୍ଧୁ ସାକ୍ଷୀଗୋପାଳ ଡାକବଙ୍ଗଳାରେ ଯେଉଁ ନିଭୃତ ବୈଠକ ଡକାଇଥିଲେ, ସେଥିରେ ସ୍ଥିର ହେଲା ଆଚାର୍ଯ୍ୟ ମହାଶୟ ସେହିଦିନଠାରୁ ସ୍କୁଲର ହେଡ଼ମାଷ୍ଟର ହେବେ। ଆଚାର୍ଯ୍ୟ ଘୋର ଅନିଚ୍ଛା ସତ୍ତ୍ୱେ ଏହି ଗୁରୁଭାର ବହନ କଲେ। ଆଚାର୍ଯ୍ୟଙ୍କର ସ୍କୁଲ ପରିଚାଳନା ସମ୍ପର୍କରେ ଗୋଦାବରୀଶ ଉଲ୍ଲେଖ କରିଛନ୍ତି, "ଶାଳଗ୍ରାମ ଖଟୁଲିରେ ବସି ଫୁଲ ଚନ୍ଦନ ପୂଜା ପାଆନ୍ତି। କିନ୍ତୁ ଯେଉଁ ଘରେ ତାଙ୍କର ଖଟୁଲି ଥାଏ, ସେ ଘର ଚଳାଇବା ଭାର ତାଙ୍କ ମୁଣ୍ଡରେ ପଡ଼ିଲେ ସେ ଖଟୁଲିରେ ଏ ପାଖ ସେ ପାଖ ଗଡ଼ି ପାରନ୍ତି, କିନ୍ତୁ ଘର ଚଳାଇବାକୁ ନିଜର ଅକ୍ଷମତା ପ୍ରକାଶ କରି ବସନ୍ତି। ହରିହରବାବୁ ସତ୍ୟନିଷ୍ଠା, ସେବା, ଦୟା, ସହିଷ୍ଣୁତା,

ଚରିତ୍ରବଳ ଆଦି ଗୁଣରେ ଅବଶ୍ୟ ବଡ଼ଥିଲେ, କିନ୍ତୁ ଚାଳକ ପଦରେ ରହି ଅନୁଷ୍ଠାନଟିକୁ ଚଳାଇ ପାରିଲେ ନାହିଁ । ନୀଳକଣ୍ଠବାବୁ ଜଣେ ସ୍ପଷ୍ଟବାଦୀ ଲୋକ । ତାଙ୍କର ଭିତରେ କଥାଏ, ବାହାରେ କଥାଏ ନ ଥାଏ । ମୁଁ ତାଙ୍କଠାରୁ ଏକାନ୍ତ ଆଲୋଚନାରେ ଅନେକ ଥର ଶୁଣିଲି, 'ଆଚ୍ଛା, ଏ ଗୋରୁ ମୁଣ୍ଡ ଆପଣାରେ କାମ କ'ଣ ସୁରୁଖୁରେ ଚଳୁଛି ? ହରି ଭାଇନା ତ ଗୋଟାଏ ଗୋରୁ, ଆଉ ଗୋପବନ୍ଧୁ ବାବୁ ହେଉଛନ୍ତି ଅନ୍ଧ ।"

ନୀଳକଣ୍ଠ ଦାସ ୧୯୨୦ ମସିହା ସେପ୍ଟେମ୍ବର ୨୦ ତାରିଖରେ ସତ୍ୟବାଦୀ ଛାଡ଼ି ସାର୍ ଆଶୁତୋଷଙ୍କର ଅନୁରୋଧରେ କଲିକତା ବିଶ୍ୱ-ବିଦ୍ୟାଳୟରେ ଓଡ଼ିଆ ଓ "ତୁଳନାତ୍ମକ ଭାଷାତତ୍ତ୍ୱ" ପଢ଼ାଇବା ପାଇଁ ବିଦାୟ ନେଲେ । ନୀଳକଣ୍ଠଙ୍କର କଠୋର ଶାସନ, ଶୃଙ୍ଖଳା ଓ ଆଦର୍ଶରେ ଆଚାର୍ଯ୍ୟ ହରିହର ହେଡ଼ମାଷ୍ଟର ହୋଇ ସ୍କୁଲର କାର୍ଯ୍ୟ ଯଥାଯଥ ଭାବରେ ଚଳାଇପାରିଲେ ନାହିଁ । ଏଇଟା କିନ୍ତୁ ତାଙ୍କର ଅଯୋଗ୍ୟତାର ପ୍ରମାଣ ନୁହେଁ । ତାଙ୍କୁ ମିଛ କହି ଆସେ ନାହିଁ । ସେ ପିଲାଙ୍କୁ ଡରାଇ ପାରନ୍ତି ନାହିଁ । ସେ ଥିଲେ ସତ୍ୟ ଓ ସରଳତାର ଜୀବନ୍ତ ଅବତାର । ନୀଳକଣ୍ଠ ଗଲେ, ଗୋଦାବରୀଶ ଗଲେ ତଥାପି କିନ୍ତୁଦାନ କୃପାସିନ୍ଧୁଙ୍କ ନେତୃତ୍ୱରେ ସ୍କୁଲ କାମ ଚାଲିଲା । ଆଚାର୍ଯ୍ୟ ଶିକ୍ଷକ ହୋଇ ରହିଲେ । କିନ୍ତୁ ୧୯୧୮ରେ ପ୍ରକାଶିତ ଇଂରାଜୀ 'Satyabadi school report'ରେ ଏହିପରି ଭାବରେ ଆଚାର୍ଯ୍ୟଙ୍କ ସ୍ଥାନ ନିରୂପିତ ହୋଇଅଛି ।

## THE STAFF OF THE SCHOOL

(1) **Babu Harihar Das,** Acharya.—He also does teaching in the school. He passed first Art.

(2) **Nilakanth Das,** M. A.— Headmaster, Superintendent of the hostel, President of the literary Association, President of the Mess Board.

ଏଥିରୁ ସୂଚନା ମିଳେ ନିକଟ ଭବିଷ୍ୟତରେ ଆଚାର୍ଯ୍ୟେ ଦିନେ ସ୍କୁଲର ପ୍ରଧାନ ଶିକ୍ଷକର ଦାୟିତ୍ୱ ନେବେ । ତାହାପରେ କ୍ରମଶଃ

ସତ୍ୟବାଦୀ ସ୍କୁଲର ଗୌରବ ରବି ଅସ୍ତ ହେବାକୁ ବସିଲା । ତାର ପ୍ରସିଦ୍ଧ ଜୀବନର ସନ୍ଧ୍ୟା ଆସି ଉପସ୍ଥିତ ହେଲା । ୧୯୨୧ରେ ମହାତ୍ମାଗାନ୍ଧୀ ସତ୍ୟବାଦୀକୁ ଆସିଥିଲେ । ସେତେବେଳକୁ ଅସହଯୋଗ ଆନ୍ଦୋଳନ ଭାରତର ସର୍ବତ୍ର ବ୍ୟାପିଯାଇଥାଏ । ଅସହଯୋଗ ଆନ୍ଦୋଳନରେ ଗୋଟିଏ ପ୍ରଧାନ କଥା ହେଲା—ସମସ୍ତେ ଇଂରେଜମାନଙ୍କ ସହିତ ସକଳ ସମ୍ପର୍କ ବର୍ଜନ କରନ୍ତୁ, ସ୍କୁଲ ପିଲାମାନେ ସ୍କୁଲ ଛାଡ଼ନ୍ତୁ, କଚେରୀର ଅମଲାଗଣ କଚେରୀ ଛାଡ଼ନ୍ତୁ, ବିଲାତି ବସ୍ତ୍ର ଓ ଅନ୍ୟାନ୍ୟ ଜିନିଷ ବର୍ଜନ କରନ୍ତୁ, ଦେଖିବ କାଲି ଭାରତକୁ ସ୍ୱରାଜ୍ୟ ମିଳିବ । ଏହାହିଁ ଅସହଯୋଗ ଆନ୍ଦୋଳନ । ନୀଳକଣ୍ଠ କଲିକତା ବିଶ୍ୱବିଦ୍ୟାଳୟ ଛାଡ଼ି ସମ୍ବଲପୁରରେ ତାଙ୍କର ଆସ୍ଥାନ ଜମାଇ ବସିଲେ । ଏହିଠାରେ ତାଙ୍କର ଅସହଯୋଗ ଆନ୍ଦୋଳନର ପ୍ରଚୁର ଚାଲିଲା । ନୀଳକଣ୍ଠ ନିଜେ ଉଲ୍ଲେଖ କରିଛନ୍ତି, "ସେହି ସମୟରେ ଛାତ୍ରମାନଙ୍କ ସ୍କୁଲରୁ ନଡ଼ାଇବା ପାଇଁ ଓ ଓକିଲମାନଙ୍କୁ କଚେରୀରୁ ଛଡ଼ାଇବା ପାଇଁ ମୁଁ ଗୋଟିଏ ଗୀତ ଲେଖି ସହରରେ ଶୋଭାଯାତ୍ରା କରାଇଥିଲି । ସେ ଗୀତଟି ସମ୍ପୂର୍ଣ୍ଣ ମନେ ନାହିଁ । ତାର ଚାରେଟି ଧାଡ଼ି ମାତ୍ର ମନେ ପଡ଼ୁଛି,—

'ସ୍ୱରାଜ ଭାଯ୍ୟା ଅଲବତ୍ ହୋଗା
ଛୋଡ଼୍‌କେ ଆଓ ଗୋଲାମୀ,
ଭାରତ ଲଡ଼୍‌କା ଗୋଲାମ ହୋକେ
କାହେ କରେ ବଦନାମୀ ।'

ସ୍କୁଲ, କଚେରୀ କାଉନ୍‌ସିଲକୁ ଯ୍ୟାଦରଖୋ ବାବୁଜୀ ମାୟା, ଏ ଅବ୍ ଗୋଲାମୀକା ଇସ୍‌ମେ ନାହିଁ ଭୁଲେଗି ।"

ଅସହଯୋଗ ଆନ୍ଦୋଳନର ଫଳ ସ୍ୱରୂପ ଓଡ଼ିଶାରେ ଗୋପବନ୍ଧୁଙ୍କ ନେତୃତ୍ୱରେ ଗୋଟିଏ ନୂତନ 'ଉତ୍କଳ ଶିକ୍ଷା ପରିଷଦ' ଗଠିତ ହେଲା । ସତ୍ୟବାଦୀ ସ୍କୁଲକୁ ଜାତୀୟ ସ୍କୁଲରେ ପରିଣତ କରି ଏଠାରେ ଦେଶ ଓ ମହାଦେଶର ଉତ୍‌ଥାନ ପତନର ଇତିହାସ ପଢ଼ାହେଲା ଓ ମୁଖ୍ୟଭାବରେ ଚରଖାରେ ସୂତାକଟା ଓ ଖଦଡ଼ ବୁଣିବା କାର୍ଯ୍ୟ ଚାଲିଲା । ଅବଶ୍ୟ ବହୁ ସଂଖ୍ୟାରେ ଛାତ୍ର ଏହି ଜାତୀୟ ଶିକ୍ଷା ପ୍ରତି ଆକୃଷ୍ଟ ହେଲେ ନାହିଁ ।

କେତେକ ଛାତ୍ର ଏଣେ ତେଣେ ଅସହଯୋଗ ମନ୍ତ୍ର ପ୍ରଚାର କରିବାକୁ ଗାଁ ଗଣ୍ଡାକୁ ଚାଲି ଗଲେ । ବାକି ଯେଉଁ ଶିକ୍ଷକ ଓ ଛାତ୍ର ସତ୍ୟବାଦୀରେ ରହିଲେ, ସେମାନେ ଏଠାରେ ଉଚ୍ଚ ଶିକ୍ଷା ଲାଭ କଲେ । ସେମାନେ ଜାତୀୟ ସ୍କୁଲରୁ ପାଠ ପଢ଼ି 'ସତ୍ୟବାଦୀ ବିହାର'ରେ, କଲେଜର ପାଠକ୍ରମ ଅଧ୍ୟୟନ କଲେ । କିନ୍ତୁ ଏଡ଼େ ବଡ଼ 'ବିହାର' ପାଇଁ ଅର୍ଥ କାହିଁ ? ପ୍ରଥମତଃ ଯେଉଁ ମହାବିଦ୍ୟାଳୟ ପ୍ରତିଷ୍ଠିତ ହେଲା ସେଥିର ପ୍ରଧାନ ଅଧ୍ୟାପକ ହୋଇ ରହିଲେ ଶ୍ରୀ କୃପାସିନ୍ଧୁ ମିଶ୍ର, M.A. । ଏହି 'ବିହାର'ର ବେଳ ନିର୍ବାହ ନିମନ୍ତେ ଗୋପବନ୍ଧୁ, ଲିଙ୍ଗରାଜ ମିଶ୍ରଙ୍କୁ ସାଙ୍ଗରେ ନେଇ ବମ୍ବେ ଯାଇଥିଲେ କିଛି ଅର୍ଥ ସଂଗ୍ରହ କରିବା ନିମନ୍ତେ । ସତ୍ୟବାଦୀବିହାର ନିମନ୍ତେ ଅଜସ୍ର ଟଙ୍କା ଦରକାର । ତେଣୁ ବେଶୀ ପିଲେ ଆଉ ଏଠାରେ ରହିବାକୁ ଇଚ୍ଛା କଲେ ନାହିଁ ।

Over and above this sacrifice, the heaviest to us no doubt, the sudden conversion of our institution put an equally financial pressure upon the spirit of sacrifice of our individual workers. The roll fell down considerable, the promised Govt. grant of Rs. 20,000/ could not be accepted, those of our patrons who has been helping us with money, with held their subscriptions. We believe in free education and hold the theory that the light of knowledge like the physical light of the Sun and the Moon, should be freely shared by all, rich and poor, high and low. This inclined us to abolish all tuition fees. The mass of people who favour Non-co-operation, famine-stricken as they frequently are, can render us very little pecuniary help. Thus devoid of all financial support the workers, who have almost nothing to supplement their personal

allowances from the 'Vihar', even further reduced "their merepittance" and satisfied themselves with Rs. 10/- to Rs. 40/- a month. Mahatma Gandhi was surprised to see this when he favoured our little groves with a visit in March 1921. He thus writes about our work and workers in the 'Young India' of the 13th April 1921.

Orissa has workers too. Pandit Gopabandhu Das, an ex- M. L. C, an ex-pleader and many other things besides, is a self-less leader. He and his band, they tell me, live on rice and dal. They rarely take ghee now-a-days. After non-co-operation the workers have reduced themselves to the lowest honorarium even as little as ten rupees per month.

No wonder if I believe that with such earnest men Swaraj is possible of attainment during the year. Pandit Gopabandhu has an open air school at Sakhigopal, twelve miles this side of Puri.

It is a grove school. It is worthy of visit. I passed a most delightful day in the middst of the boys and their teachers. It is a serious experiment in open air teaching. Some of the boys are powerful athletes.

ଅର୍ଥାତ୍, ଏହିପରି ଜାତୀୟ କର୍ମରେ ଯେଉଁମାନେ ସର୍ବସ୍ୱ ତ୍ୟାଗ କରିଥିଲେ ସେମାନଙ୍କୁ 'ସତ୍ୟବାଦୀ ବିହାର'ର ଆର୍ଥିକ ଅନାଟନ ଖୁବ୍ ବ୍ୟତିବ୍ୟସ୍ତ କରିପକାଇଲା । ସେତେବେଳକୁ ସରକାର ସତ୍ୟବାଦୀରେ

ଗୋଟିଏ କଲେଜ ପ୍ରତିଷ୍ଠା କରିବା ନିମନ୍ତେ ଗୋପବନ୍ଧୁ ଦାସଙ୍କୁ ଟ ୨୦,୦୦୦ ଜାଚୁଥିଲେ । କିନ୍ତୁ 'ବିହାର'ର ପୃଷ୍ଠପୋଷକମାନେ ତାହା ଗ୍ରହଣ କଲେ ନାହିଁ । ସେତେବେଳେ ଗୋପବନ୍ଧୁ ଦାଶଙ୍କର ବିଶ୍ୱାସ ଥିଲା ଶିକ୍ଷା ସ୍ୱାଧୀନ ଏବଂ ସ୍ୱାବଲମ୍ବନଶୀଳ ହେବା ଆବଶ୍ୟକ । ସୂର୍ଯ୍ୟର ଆଲୋକ ପରି ଜ୍ଞାନର ଆଲୋକ ସମସ୍ତେ ଯେପରି ପାଇବେ, ଧନୀ ଓ ଦରିଦ୍ର ଯେପରି ସମାନ ଭାବରେ ଜ୍ଞାନ ଲାଭ କରିବେ, ତାହାର ବିହିତ ଚେଷ୍ଟା କରିବାକୁ ହେବ । ସରକାରୀ ସାହାଯ୍ୟ ଦ୍ୱାରା ଏହି ଅଭାବ ଦୂର ହେବନାହିଁ । ବରଂ ଏହି ଅସହଯୋଗ ଆନ୍ଦୋଳନ ସମୟରେ ଏହା ଦେଶରେ ଶିକ୍ଷା ପ୍ରସାର ନିମନ୍ତେ କ୍ଷତିକାରକ ହେବ । ତେଣୁ ଏହି grant କୁ ପ୍ରତ୍ୟାଖ୍ୟାନ କରାଗଲା । ବର୍ତ୍ତମାନ ପ୍ରଶ୍ନ ହେଲା ଏଠାରେ ଯେଉଁ ଶିକ୍ଷକମାନେ ଅଛନ୍ତି, ସେମାନେ ଘିଅ, ଦୁଧ ନ ଖାଆନ୍ତୁ ପଛକେ, ମୁଠିଏ ମୁଠିଏ ଭାତ ତ ଖାଇବେ ? ତେଣୁ ସେମାନଙ୍କୁ ଅତି କଷ୍ଟରେ ଟ ୧୦ ଠାରୁ ଟ ୪୦ ପର୍ଯ୍ୟନ୍ତ ମାସିକ ବେତନ ଦେବାର ବ୍ୟବସ୍ଥା କରାଗଲା । ସେତେବେଳେ ଶିକ୍ଷକମାନଙ୍କ ଭିତରେ ଆଚାର୍ଯ୍ୟ ହରିହର ଥାନ୍ତି ଏବଂ ତାଙ୍କ ସଙ୍ଗେ ପାଞ୍ଚଜଣ ପର୍ଯ୍ୟନ୍ତ M.A. ଡିଗ୍ରିଧାରୀ ଶିକ୍ଷକ ବି ଥାନ୍ତି । ମହାତ୍ମାଗାନ୍ଧି ସତ୍ୟବାଦୀର ବନବିଦ୍ୟାଳୟ ଦେଖିବା ନିମନ୍ତେ ୧୯୨୧ ମସିହା ମାର୍ଚ୍ଚ ମାସରେ ଆସି ଶିକ୍ଷକ ମାନଙ୍କର ଏହି ଦୁରବସ୍ଥା ଦେଖି ବିସ୍ମିତ ହୋଇଥିଲେ । ୧୯୨୧ ଏପ୍ରିଲ୍ ୧୩ ତାରିଖରେ ସେ ତାଙ୍କ 'Young India'ରେ ଲେଖିଥିଲେ, "ଓଡ଼ିଶାରେ ମଧ୍ୟ କର୍ମୀର ଅଭାବ ନାହିଁ । ପଣ୍ଡିତ ଗୋପବନ୍ଧୁ ଦାଶ ଯେ ବିହାର, ଓଡ଼ିଶା ବ୍ୟବସ୍ଥାପକ ସଭାର ସଭ୍ୟଥିଲେ ଏବଂ ଜଣେ ପ୍ରବୀଣ ଆଇନଜ୍ଞ ଥିଲେ । ତାଙ୍କର ନିସ୍ୱାର୍ଥ ଦେଶସେବା ଅଭିନନ୍ଦନୀୟ । ସତ୍ୟବାଦୀରେ ତାଙ୍କର ଗୋଷ୍ଠୀ ମଧ୍ୟରୁ ଜଣେ ମୋତେ କହିଲେ, ସେମାନେ ଭାତ, ଡାଲି ଖାଇ ଏଠାରେ ପଡ଼ିଛନ୍ତି । ଘିଅ ସେମାନେ କେଉଁଠାରୁ ପାଇବେ ଯେ ଖାଇବେ ? ଅସହଯୋଗ ଆନ୍ଦୋଳନ ପରେ ସେମାନେ ମାସିକ ଟ. ୧୦ ବେତନରେ ଏଠାରେ ଶିକ୍ଷକତା କରୁଛନ୍ତି ।"

ମହାତ୍ମା ଗାନ୍ଧି ପୁଣି ଲେଖିଛନ୍ତି, "ଏହିପରି ବିଶୃଙ୍ଖଳ ଓ ତ୍ୟାଗନିଷ୍ଠ ବଂକ୍ତିମାନଙ୍କ ସାହାଯ୍ୟରେ ସ୍ୱରାଜ୍ୟ ଯେ ଅଳ୍ପଦିନ ଭିତରେ ଆମ୍ଭକୁ ମିଳିବ ଏଥିରେ ଅସମ୍ଭବ କ'ଣ ?"

( The Satyabadi Vihar, The New Conception
1922—1923 )

କିନ୍ତୁ ଗୋଦାବରୀଶ ସତ୍ୟବାଦୀ ସ୍କୁଲ ଭାଙ୍ଗି ଯିବାର କାରଣ ସ୍ୱରୂପ ଯାହା ତାଙ୍କ ଆତ୍ମ ଚରିତରେ ଉଲ୍ଲେଖ କରି ଅଛନ୍ତି, ଆମ୍ଭମାନଙ୍କର ବିଶ୍ୱାସ ତାହା ଯଥାର୍ଥ କାରଣ ନୁହେଁ । ଏହି ସ୍କୁଲ ଲୋପ ପାଇବାର ପ୍ରଧାନ କାରଣ ହେଲା ସେହି ଅସହଯୋଗ ଆନ୍ଦୋଳନ ସମୟରେ ଗୋପବନ୍ଧୁଙ୍କର ପ୍ରଚଳିତ ଶିକ୍ଷା ସମ୍ବନ୍ଧରେ ତାଙ୍କର ମତ ପରିବର୍ତ୍ତନ । ସେ 'ସତ୍ୟବାଦୀ'ର ୧୩୨୮ ସାଲ ୫ମ ସଂଖ୍ୟା ଷଷ୍ଠ ଖଣ୍ଡରେ 'ଜାତୀୟ ଶିକ୍ଷା' ସମ୍ବନ୍ଧରେ ଯେଉଁ 'ଆଲୋଚନା' ଲେଖିଥିଲେ ତାହା ଏଠାରେ ଉଦ୍ଧାର କରାଗଲା ।

ଜାତୀୟ ଶିକ୍ଷା :—ଜାତୀୟ ଶିକ୍ଷାର ଅଭାବ ବହୁଦିନ ହେଲା ଭାରତର ଜାଣିବା ଶୁଣିବା ଲୋକେ ଉତ୍ତମ ରୂପେ ବୁଝି ଅଛନ୍ତି । ଇଂରେଜୀ ସାହିତ୍ୟର ଶିକ୍ଷା ଯେ କେବଳ ସରକାରୀ ଚାକର ତିଆରି କରୁଅଛି ଏବଂ ତଦ୍ୱାରା ଆମ୍ଭମାନଙ୍କର ଜାତୀୟ ଆକାଂକ୍ଷା ପୂର୍ଣ୍ଣ ହୋଇ ପାରିବ ନାହିଁ କିମ୍ବା ଆମ୍ଭମାନଙ୍କର ମାନସିକ ଓ ଆଧ୍ୟାତ୍ମିକ ସମ୍ଭାବନା ସକଳର ପୂର୍ଣ୍ଣ ବିକାଶ ହେବ ନାହିଁ । ଏହା ସହସ୍ର ମୁଖରେ କୁହା ହୋଇଅଛି । ତଥାପି ଏ ଜାତିକ କି ବା ମୋହ ଘୋଟିଛି କେଜାଣି ଯଥାର୍ଥ ଜାତୀୟ ଶିକ୍ଷାର ଉଦ୍ୟମରେ ଅନେକେ ବାଧା ଦେବାକୁ ପ୍ରସ୍ତୁତ । ସରକାରଙ୍କ ସ୍କୁଲ କଲେଜ ଗୁଡ଼ିଏ ଯେପରି ସର୍ବନାଶ ହେଲା ! ଅନେକ କହନ୍ତି ଜାତୀୟ ଶିକ୍ଷାର ବ୍ୟବସ୍ଥା ହୋଇ ନ ଥିବା ସ୍ଥଳେ ଉପସ୍ଥିତ ଶିକ୍ଷା ସହସ୍ର ଦୋଷ ଯୁକ୍ତ ହେଲେହେଁ ତାହା ପରିହାର୍ଯ୍ୟ ନୁହେଁ । ମାତ୍ର ଏମାନେ କେବଳ ଏତିକି କହି ନିଶ୍ଚିନ୍ତ, ଯେପରି କି ଜାତୀୟ ଶିକ୍ଷାର ବ୍ୟବସ୍ଥା କରିବା ସେମାନଙ୍କର କର୍ତ୍ତବ୍ୟ ନୁହେଁ । ଆମ୍ଭେମାନେ କହୁ ଯାହା ଦୋଷାବହ ବୋଲି ଜାଣିଲୁ,

ଯାହା ଆମ୍ଭମାନଙ୍କ ଜାତୀୟ ଜୀବନ ବିକାଶରେ ଅନ୍ତରାୟ ତାହା ଆମେ ତ୍ୟାଗ କର, ଅଭାବ ହେଲେ ତାହାର ପୂରଣ ଲାଗି ସ୍ୱତଃ ଚେଷ୍ଟା ହେବ । ଅସହଯୋଗ ଅନୁସରଣ କରି କେତେକ ମିଶନାରୀ ଛାତ୍ର ସ୍କୁଲ କଲେଜ ଛାଡ଼ିଛନ୍ତି; ଅସହଯୋଗ ବାହାନାରେ ଅନେକ ଅକର୍ମଣ୍ୟ ଛାତ୍ର ମଧ୍ୟ ଶିକ୍ଷାରେ ଜଳାଞ୍ଜଳି ଦେଇଛନ୍ତି ।

ଏହି ଉଭୟ ଶ୍ରେଣୀର ଛାତ୍ରଙ୍କ ମଧ୍ୟରୁ କେତେକ ଏବଂ ସେମାନଙ୍କ ମୁରବିମାନେ ଜାତୀୟ ବିଦ୍ୟାଳୟ ଲାଗି ଉଦ୍‌ବ୍ୟସ୍ତ ଥିବାର ଦେଖାଯାଏ । ଅବଶ୍ୟ ଦେଶର ନାନା ସ୍ଥାନରେ ଜାତୀୟ ବିଦ୍ୟାଳୟ ବସୁଅଛି ଏବଂ ଶୀଘ୍ର ଆହୁରି ଅଧିକ ବସିବା ଉଚିତ । ମାତ୍ର ଆମ୍ଭେମାନେ କହୁ ବର୍ତ୍ତମାନ ଅବସ୍ଥାରେ ଯେଉଁମାନେ ଅସହଯୋଗ ଅନୁସରଣ କରି ଶିକ୍ଷା ଛାଡ଼ିଛନ୍ତି, ସେମାନଙ୍କର ଜାତୀୟ ବିଦ୍ୟାଳୟ ଲାଗି ଏଡ଼େ ବ୍ୟସ୍ତ ହେବା ଆବଶ୍ୟକ କ'ଣ ? ଯଥାର୍ଥରେ ଅନେକ ଛାତ୍ର ଏବଂ ସେମାନଙ୍କ ମୁରବିମାନେ ଜାତୀୟ ଶିକ୍ଷାର ଅର୍ଥ ଓ ଉଦ୍ଦେଶ୍ୟ ବୁଝି ନାହାନ୍ତି । ସେମାନେ ଆପଣାର ପୂର୍ବ ସଂସ୍କାର ଛାଡ଼ିପାରୁ ନାହାନ୍ତି । ସରକାରୀ ସଂପର୍କୀୟ ଯେଉଁ ବିଦ୍ୟାଳୟମାନ ସେମାନେ ଛାଡ଼ିଛନ୍ତି, ଜାତୀୟ ତତ୍ତ୍ୱାବଧାନରେ ପରିଚାଳିତ ଅଳ୍ପାଧିକ-ପରିମାଣରେ ଠିକ୍ ସେହିପରି ବିଦ୍ୟାଳୟମାନ ସେମାନେ ଲୋଡ଼ୁଛନ୍ତି । ଆମ୍ଭମାନଙ୍କର ପରାମର୍ଶ ଏହି ଯେ ଏ ମାନସିକ ଦାସ୍ୟଭାବ ଦୂର କରିବା-ଲାଗି ପୁସ୍ତକ ପଢ଼ା ଶିକ୍ଷା ଏବେ କେତେଦିନ ଏକାବେଳେକେ ବନ୍ଦ ହେବା ପ୍ରୟୋଜନ ।

ଦେଶର ଯୁବକମାନେ ପ୍ରଥମେ ମାନସିକ ବିଶ୍ରାମ ପାଳନ କରନ୍ତୁ । ପୁସ୍ତକ ପାଠଦ୍ୱାରା ମସ୍ତିଷ୍କକୁ ଅତିରିକ୍ତ ଭାରାକ୍ରାନ୍ତ ନ କରି ବିଶ୍ରାମ ଦିଅନ୍ତୁ; ହସ୍ତ, ପଦ, ଚକ୍ଷୁ, କର୍ଣ୍ଣ ପ୍ରଭୃତି ଅନ୍ୟାନ୍ୟ କର୍ମେନ୍ଦ୍ରିୟର ଉପଯୁକ୍ତ ଚାଳନା କରନ୍ତୁ । ଉପସ୍ଥିତ ଜାତୀୟ କାର୍ଯ୍ୟରେ ଏହି ଇନ୍ଦ୍ରିୟମାନଙ୍କର ବିହିତ ଏବଂ ନିୟମିତ ଚାଳନା ହେବାର ଯଥେଷ୍ଟ ସୁବିଧା ଅଛି ।

ଅରଟରେ ସୂତା କାଟିବା ଏବଂ ସେ ସୂତାରେ ଲୁଗା ବୁଣିବାରେ ଏହି ସବୁ ଅଙ୍ଗ ପ୍ରତ୍ୟଙ୍ଗ ସୁନ୍ଦର ଗଠିତ ହେବ । ଏଥିରେ ମନ ସ୍ଥିର ହେବ ଏବଂ ଚିତ୍ତର ଏକାଗ୍ରତା ଆସିବ । ଦେଶର ପଲ୍ଲୀ ଗ୍ରାମରେ ଲୋକ-ସାଧାରଣଙ୍କ ମଧ୍ୟରେ ନୂତନ ଆନ୍ଦୋଳନର ମର୍ମ ଓ ଉଦ୍ଦେଶ୍ୟ ପ୍ରଚାର କରିବା ଅନ୍ୟଏକ କାର୍ଯ୍ୟ । ଜାତୀୟ ସଂଗୀତ ବୋଲି ପଲ୍ଲୀବାସୀ ପ୍ରାଣରେ ନବଭାବ ଜନ୍ମାଇବାକୁ ହେବ । ଗ୍ରାମେ ଗ୍ରାମେ କାଦୁଅ ପଙ୍କରେ ବିଲଖାଲରେ ବୁଲି ଦେଶ ସଙ୍ଗେ ଘନିଷ୍ଠ ପରିଚୟ କରିବାକୁ ହେବ ।

ଦେଶର ଭାଷା ଶିଖି ଦେଶବାସୀର ସ୍ୱରରେ ନିଜ ସ୍ୱର ମିଶାଇବାକୁ ହେବ । ଦେଶର ପ୍ରକୃତ ଅଭାବ ହୃଦୟଙ୍ଗମ କରିବାକୁ ହେବ । ସ୍କୁଲରେ ଦେଶର ଆତ୍ମା ସଙ୍ଗେ ନିଜ ଆତ୍ମାକୁ ଏକୀଭୂତ କରିବାକୁ ହେବ । ଅଥଚ ପୁସ୍ତକ ପାଠ ବିନା ମାନସିକ ନିର୍ବାହାରରେ ଏହାସବୁ କରିବାକୁ ହେବ । ଜାତୀୟ ବିଦ୍ୟାଅନୁଷ୍ଠାନର ଏହା ଅଧିବାଶ ନିୟୁ । ଜାତୀୟ ବିଦ୍ୟାଳୟରେ ପୁସ୍ତକ ଧରି ଗଣିତ, ଭୂଗୋଳ ଇତିହାସ ଆଦି ବିଦ୍ୟାରମ୍ଭ କରିବା ପୂର୍ବରୁ ଦେଶର ଜନସାଧାରଣଙ୍କ ସଙ୍ଗେ ମିଳନ ଏବଂ ଜାତୀୟ ଯନ୍ତ୍ର ପରିଚାଳନକରି ପୂର୍ବର ସଂସ୍କାର କଳୁଷ ଧୁଆଇବା ଆବଶ୍ୟକ । ଏହି ପ୍ରକାର ବର୍ଜନ ଏବଂ ସାଧନ ଜାତୀୟ ଶିକ୍ଷା ପ୍ରଣାଳୀରେ ପ୍ରଥମ ସୋପାନ ।

ଏହିପରି ଭାବରେ ଦେଶର ଆତ୍ମା ସଙ୍ଗେ ନିଜ ଆତ୍ମାକୁ ଏକୀଭୂତ କରିବାକୁ ଆଗ୍ରହାନ୍ୱିତ ଓ ଉତ୍କଣ୍ଠିତ ହୋଇ ସର୍ବ ପ୍ରଥମେ ବାହାରି ପଡ଼ିଲେ ଆଚାର୍ଯ୍ୟ ହରିହର ଦାଶ । ବିନା ପୁସ୍ତକ ପାଠରେ ମାନସିକ ନିର୍ବାହାରରେ ଦେଶର ପଲ୍ଲୀ ଗ୍ରାମରେ ଲୋକସାଧାରଣଙ୍କ ମଧ୍ୟରେ ଅସହଯୋଗ ଆନ୍ଦୋଳନର ମର୍ମ ଓ ଉଦ୍ଦେଶ୍ୟ ପ୍ରଚାର କରିବାକୁ ଗୋପବନ୍ଧୁଙ୍କ ପରି ସର୍ବ ପ୍ରଥମେ ନିଜକୁ ପ୍ରସ୍ତୁତ କଲେ ଆଚାର୍ଯ୍ୟ ହରିହର । ତାଙ୍କର ନିଜର ହୋଇ କିଛି ନ ଥିଲା । 'ବସୁଧୈବ କୁଟୁମ୍ବକମ୍' ଏହି ନୀତିରେ ଆସ୍ଥାବାନ୍ ଥିଲେ । ନିଜର ପୈତୃକ ସମ୍ପତ୍ତି ଭାଇଭାଇ ମଧ୍ୟରେ ବଣ୍ଟନ କରିବା ସମୟରେ ସେ କହିଥିଲେ, "ମୋର ଏ ସମ୍ପତ୍ତିରେ

କ କାର୍ଯ୍ୟ । ମୋ ଭାଗରେ ଯାହା ପଡ଼ିବ ତାହା ଅନ୍ୟଭାଇମାନଙ୍କୁ ଦେଇଦିଅ ।" ଏପରି ଜନସେବା ଓ ତ୍ୟାଗ ଆଦର୍ଶରେ ଯେ ଉଦ୍‌ବୁଦ୍ଧ ହୋଇଥିଲେ ତାହାର ବର୍ତ୍ତମାନ ସତ୍ୟବାଦୀ ସ୍କୁଲ ଯାହାକ ଟଳମଳ ଅବସ୍ଥା ସେଥିପ୍ରତି ତାଙ୍କର ଭ୍ରୂକ୍ଷେପ କ'ଣ ? ସେ ବର୍ତ୍ତମାନ ନିଜକୁ ଅସହଯୋଗ ଆନ୍ଦୋଳନରେ ମିଶାଇ ଦେବାକୁ ଜାଗ୍ରତ ହେଲେ । ବର୍ତ୍ତମାନ ତାଙ୍କ ମନରେ ପ୍ରଶ୍ନ ହେଲା, "ଉତ୍ତିଷ୍ଠତ ଜାଗ୍ରତ ପ୍ରାପ୍ୟ ବରାନ୍ନିବୋଧତ'—ଉଠ, ଜାଗ, ଯେତେ ଦିନ ଯାଏଁ ସେହି ଅଭିଳଷିତ ବସ୍ତୁ ପ୍ରାପ୍ତ ନ ହୋଇଛି ସେତେଦିନ ଯାଏଁ ପ୍ରବଳ ଉଦ୍ୟମ, ଅସୀମ ଚେଷ୍ଟା କରିବାରୁ ବିରତ ହୁଅ ନାହିଁ ।

ଇଂରେଜମାନଙ୍କ ଦ୍ୱାରା ପ୍ରତିଷ୍ଠିତ ସ୍କୁଲ ଓ କଲେଜ ରହିବ କି ନାହିଁ ଏ ବିଷୟରେ ଅସହଯୋଗୀ ନୀଳକଣ୍ଠ ଦାଶ 'ସତ୍ୟବାଦୀ'ର ଯେଉଁ ସଂଖ୍ୟାରେ ଗୋପବନ୍ଧୁ ଜାତୀୟ ଶିକ୍ଷା ଉପରେ ଆଲୋଚନା କରିଥିଲେ; ସେହି ସଂଖ୍ୟାରେ ଲେଖିଥିଲେ, 'ସ୍ୱରାଜରେ ଇଂରାଜୀ ଶିକ୍ଷା ରହିବ ନାହିଁ । ଏପରି ଯେଉଁମାନେ ଆଶଙ୍କା କରନ୍ତି କିମ୍ବା ବର୍ତ୍ତମାନ ଇଂରାଜୀ ଶିକ୍ଷା ବିରୁଦ୍ଧରେ ଅଭିସମ୍ପାତ ଶୁଣି ଏହି କଥା ବୁଝି ପ୍ରଚାର କରନ୍ତି, ସେମାନଙ୍କର ଜାତି ପ୍ରୀତି ଯାହା ହେଉ; ଦୃଷ୍ଟି ସୀମାବଦ୍ଧ, ବିଚାର ଦାସୋଚିତ । ସ୍ୱରାଜରେ ଇଂରାଜୀ ଶିକ୍ଷା ରହିବ, କିନ୍ତୁ କେବଳ ଇଂରେଜୀ ଶିକ୍ଷା ରହିବ ନାହିଁ । ପୁଣି ଇଂରେଜୀ ଶାସନତନ୍ତ୍ରର ଭାଷା ନ ହେଲେ ଶତ ଇଂରାଜୀ ଶିକ୍ଷାରେ ମଧ୍ୟ ଜାତି ପ୍ରାଣରେ ଏତେ ସହଜରେ ଦାସତ୍ୱ ପଶିବ ନାହିଁ । ଅତଏବ ଭୟ କରିବାର କିଛି ନାହିଁ । ବର୍ତ୍ତମାନ ସ୍କୁଲ କଲେଜ ଗୁଡ଼ିବାକୁ ହେବ; ଇଂରେଜୀକୁ ଭାରତ ଭାଷା ନ କରି, ହିନ୍ଦୁସ୍ଥାନୀକୁ ସେ ସ୍ଥାନରେ ବସାଇବାକୁ ହେବ । ତା'ପରେ ସ୍ୱରାଜ୍ୟର ଶିକ୍ଷା ବ୍ୟବସ୍ଥା କଲାବେଳେ ଇଂରାଜୀ ଶିକ୍ଷା ରଖିବା ନ ରଖିବାର ପ୍ରଶ୍ନ ଉଠିବ ନାହିଁ ।

ଜାପାନ ପ୍ରଭୃତି ଦେଶରେ ମଧ୍ୟ ଇଂରେଜୀ ଶିକ୍ଷା ହୁଏ । ଫ୍ରାନ୍ସର କେହି କେହି ପଣ୍ଡିତ ମଧ୍ୟ ଇଂରେଜୀ ଭାଷାରେ ପୁସ୍ତକ ଲେଖିଅଛନ୍ତି । ଇଂରେଜୀ ଭାଷା ଉନ୍ନତ ଭାଷା । ଏଥିରେ ବିସ୍ତୀର୍ଣ୍ଣ ସାହିତ୍ୟ ଅଛି । ପଣ୍ଡିତ-ମାନେ ତାହାର ଆଲୋଚନା ନ କରି ରହିପାରିବେ ନାହିଁ ; ସ୍ୱରାଜ୍ୟରେ ଭାରତ ପୃଥିବୀ-ସଭ୍ୟତାରୁ ବିଚ୍ଛିନ୍ନ ହେବ ନାହିଁ । ଭୟର କୌଣସି କାରଣ ନାହିଁ । ଭାରତ ମାତାଙ୍କର ଏ ଜାଗରଣ ବେଳେ ସେ ସବୁର ବିଚାରରେ ସମୟ ନଷ୍ଟ କରିବାର ଅବକାଶ ମଧ୍ୟ ନାହିଁ । ଉଦ୍‌ବୋଧନର ଆଲୋକ ଆସିଲାବେଳେ ପୌଢ଼ ବିଚାରର ଅନ୍ଧକାର ସେଥିରେ ନ ମିଶାଇ ଭାରତ ସନ୍ତାନ ମାନେ ପ୍ରସ୍ତୁତ ହୁଅନ୍ତୁ,—"ଭାଗ୍ୟ ଫିଟିବାର ଦିନ ଆସୁଛି, ଜଗତରେ ମନୁଷ୍ୟ ହେବାକୁ ହେବ । ଜାତିର ମୁକ୍ତି ଆମ ହାତରେ ଅଛି । ଏ ମହାଯୁଦ୍ଧରେ ପ୍ରାଣ ଢ଼ାଳଦେବାକୁ ହେବ ।"

ଏହିପରି ପରିସ୍ଥିତିରେ ସତ୍ୟବାଦୀ ସ୍କୁଲ ତାହାର ପୂର୍ବାବସ୍ଥା କିପରି ବଜାୟ ରଖନ୍ତା ? କେବଳ କୃପାସିନ୍ଧୁ ମିଶ୍ର ଏକ ପ୍ରକାର 'ନଗରହାର' ହୋଇ 'ସତ୍ୟବାଦୀ ବିହାର'ର ଅଧ୍ୟକ୍ଷତା କଲେ । କିନ୍ତୁ ତାହା ଆଉ କେତେ ଦିନ ?

# ଭଲ ମଣିଷ ହୁଅ

## ( ସତ୍ୟବାଦୀ ପରେ )

— ୭ —

ଆଚାର୍ଯ୍ୟ ହରିହର ନିଜ ଗୁଣରେ ସମସ୍ତଙ୍କୁ ବିମୋହିତ କରିଥିଲେ । ସତ୍ୟବାଦୀ ସ୍କୁଲ ଛାଡ଼ିବାର ବହୁ ଦିନପରେ ସେ ତାଙ୍କର ପୂର୍ବତନ ଛାତ୍ରମାନଙ୍କଠାରୁ ଗଭୀର ସମ୍ମାନ ଓ ଶ୍ରଦ୍ଧା ଲାଭ କରୁଥିଲେ । ଶ୍ରୀ ନବ ପଟ୍ଟନାୟକ 'ମନେପଡ଼େ ସେଦିନର କଥା' ପ୍ରବନ୍ଧରେ ଲେଖିଛନ୍ତି,— ୧୯୩୦ ମସିହାରେ "ମହାତ୍ମା ଗାନ୍ଧିଙ୍କର ଦାଣ୍ଡି ଯାତ୍ରା ପରେ ପରେ ଓଡ଼ିଶାରେ ଲବଣ ସତ୍ୟାଗ୍ରହ ପାଇଁ ଉଦ୍‌ଯୋଗ ପର୍ବ ଆରମ୍ଭ ହୋଇଥାଏ । ପ୍ରତ୍ୟହ କାଠଯୋଡ଼ି ବାଲିରେ ଗୋଟାଏ ପରେ ଗୋଟାଏ ସଭା ଚାଲିଥାଏ । ନେତାମାନଙ୍କର ପ୍ରାଣସ୍ପର୍ଶୀ ଭାଷଣ ଶୁଣି ରକ୍ତ ଗରମ ହୋଇଉଠୁଥାଏ । ସଭା ଶେଷରେ ବିଲାତି ଲୁଗାପୋଡ଼ି ମନରେ ଯେଉଁ ଉନ୍ମାଦନା ଭରି ଦେଉଥାଏ, କିଶୋର ପ୍ରାଣର ଟିକିଏ ଧୈର୍ଯ୍ୟ ବାନ୍ଧ ମାନି ରହିବା ସମ୍ଭବ ନୁହେଁ । ନେତୃବର୍ଗଙ୍କର ପ୍ରଥମ ଆହ୍ୱାନ ଥିଲା,—"ଛାତ୍ର ସମାଜ ଜାଗିଉଠ, ସ୍କୁଲ କଲେଜ ଛାଡ଼ି ଆସ, ଦେଶ ମାତୃକାର ହସ୍ତରୁ ଲୌହର ବନ୍ଧନ ଉନ୍ମୁକ୍ତ କର ।" ଯେଉଁଦିନ ଚଦର ପିନ୍ଧି ଲୁଗାଖଣ୍ଡିକ ବସ୍ତା ପଞ୍ଝାରେ ଆବୃତ୍ତ ଦେଲି ତା' ପରଦିନ ପ୍ରଥମ ପଦଯାତ୍ରୀ ଦଳ ଇଞ୍ଚୁଡ଼ି ରଣକ୍ଷେତ୍ର ଅଭିମୁଖେ ଯାତ୍ରା ଆରମ୍ଭ କଲେ । ସତ୍ୟାଗ୍ରହୀମାନଙ୍କର କପାଳରେ ସିନ୍ଦୂର ଚନ୍ଦନ, ଗଳାରେ ଫୁଲମାଳ ଓ କାନ୍ଧରେ ଝୁଲି, ହାତରେ ଲାଠି; କି ଅପୂର୍ବ ବେଶ ! 'ବନ୍ଦେ ମାତରମ୍', 'ମହାତ୍ମା ଗାନ୍ଧିଙ୍କ ଜୟ', 'ସ୍ୱାଧୀନ ଭାରତ କି ଜୟ' ଧ୍ୱନିରେ ଗଗନ ପବନ ମୁଖରିତ ହେଉଥାଏ । ବଡ଼ବାଟ ପଟୁଆରରେ ଚାଲିଥାନ୍ତି ହଜାର ହଜାର ଲୋକ । ମୋ ପିଲା-ମନ କି ସମ୍ଭାଳି ରହେ ! ଛୋଟିଆ ବକ୍‌ସ କାମେରା ଖଣ୍ଡି ଧରି ବାହାରି ପଡ଼ିଲି ତାଙ୍କରି ସଙ୍ଗେ ସଙ୍ଗେ । ବାଟରେ କେତେଟା ଫଟୋ ମୁଁ କୋଠା ଉପରେ,

କେତେବେଳେ ଗଛ ଉପରେ ଚଢ଼ି ଉଠାଇ ନେଲି । କଟକ ସହର ପ୍ରାନ୍ତ ପର୍ଯ୍ୟନ୍ତ ଯାଇ ହାଲିଆ ଲାଗିବାରୁ ଫେରିଆସିଲି ।

ମାଟ୍ରିକ୍ୟୁଲେସନର ଶେଷ ପରୀକ୍ଷା ଥାଏ ଆଉ ଅଳ୍ପ ଦିନ ବାକି । ପଢ଼ାପଢ଼ି କଥା କିଏ ପଚାରେ ? ସଳଖେ ଚାଲିଲି ସ୍ୱରାଜ ଆଶ୍ରମକୁ । ମନ ଏପରି ଉଚ୍ଚାଟ ହୋଇଥାଏ ଯେ ଘରେ ଶୋଷ ବା ହଷ୍ଟେଲ ରହଣି କିଛି ମନରେ ନ ଥାଏ । ଆଶ୍ରମକୁ ଯାଇ ଶୁଣିଲି କାଲି ଭୋରରୁ ଦିଶାସ୍ତ ପଦଯାତ୍ରୀ ଦଳ ପୂଜାସ୍ପଦ ଆଚାର୍ଯ୍ୟଙ୍କ ନେତୃତ୍ୱରେ ପଦଯାତ୍ରା ଆରମ୍ଭ କରିବେ । ମନେ ମନେ ଠିକ୍ କରି ନେଲି ନିଶ୍ଚୟ ଯିବି । ପରମପୂଜ୍ୟ ଗୁରୁଦେବ ଯେଉଁ ଦଳର ଅଗ୍ରଣୀ, ସେ ନିଶ୍ଚୟ ମୋତେ ଚିହ୍ନିପାରି ସାଙ୍ଗରେ ଯିବାକୁ ଆଗ୍ରହ ପ୍ରକାଶ କରିବେ । ସେତେବେଳକୁ ସେ ଆଶ୍ରମ ବାରଣ୍ଡାରେ ବସି ସୂତା କାଟୁଥାନ୍ତି । ଏ ମଧ୍ୟରେ କେତେ ବର୍ଷ ଛଡ଼ା ଛଡ଼ି ହୋଇଯାଇଥାଏ । ସତ୍ୟବାଦୀ ଜାତୀୟ ବିଦ୍ୟାଳୟରେ ମୁଁ ଥିଲି ଛାତ୍ର ।

ଜାତୀୟ ବିଦ୍ୟାଳୟ ଭାଙ୍ଗିଯିବା ପରେ ଆମେ ସବୁରି କିଏ କେଉଁଠାରେ ପଢ଼ୁଥାଉ । ଗୁରୁଦେବ ଆଚାର୍ଯ୍ୟଙ୍କ ସଙ୍ଗେ କେତେ ବର୍ଷ ହେଲା ଦେଖା ହୋଇ ନ ଥାଏ । ଚିହ୍ନିବେ କି ନ ଚିହ୍ନିବେ ଏଇ କଥା ଭାବି ଭାବି ପାଖରେ ଯାଇ ଠିଆ ହୋଇ ପ୍ରଣାମଟିଏ କଲି । ସାଙ୍ଗେ ସାଙ୍ଗେ ପ୍ରାଣର ଉନ୍ମାଦନାରେ କହି ପକାଇଲି ବାଲେଶ୍ୱର ଯିବା କଥା । ସଙ୍ଗେ ସଙ୍ଗେ ଉତ୍ତର ମିଳିଲା, "ଏ.ଉପରି ପରୀକ୍ଷା ରହିଲା ଅଳ୍ପ ଦିନ, ଏଥିରୁ କ'ଣ ପାଇବୁ—ଯା, ମନଦେଇ ପାଠପଢ଼ ।" ମନଟା ମରିଗଲା । ଭାବିଲି ବୋଧହୁଏ ଚିହ୍ନି ନ ପାରି ଏପରି କହିଦେଲେ, ଆଉ ଥରେ କହିବି । କଥା କହିବାକୁ ଆଉ ସାହସ ହେଲା ନାହିଁ । କାଠଟା ପରି ଛିଡ଼ାହୋଇ ରହିଲି । ମୋ ମନ କଥା ବୁଝିଲେ କି କ'ଣ ପଚାରିଲେ ପରୀକ୍ଷା ଦେଉଛୁଟି ? ତୁମ ପାଇଁ ସମୟ ଆସି ନାହିଁ, ଯା ପଢ଼ା ପଢ଼ି କର । ତାଙ୍କ କଥା ଉପରେ କଥା କହିବାର ସାହସ ମୋର ନ ଥିଲା । ତୁନିହୋଇ ବାହାରି ଆସିଲି । ମନ କିନ୍ତୁ ଏପରି ଉଚ୍ଚାଟ ହୋଇଥାଏ ଯେ ସବୁ କଥା ପାଶୋରିଦେଇ ସେମାନଙ୍କ ପଦଯାତ୍ରା ଆରମ୍ଭ ହେବାର କେତେ ଦିନ ପରେ, ମୁଁ ଟ୍ରେନ୍‌ରେ

ଯାଇ ବାଲେଶ୍ୱର ପରମିଟ କୋଠରେ ଏମାନଙ୍କ ଉପସ୍ଥିତିକୁ ଅପେକ୍ଷା କରି ରହିଲି । ମୁଁ ଯେଉଁଦିନ ବାଲେଶ୍ୱରରେ ପହଞ୍ଚିଲି ସେଇଦିନ ଗୋପବାବୁଙ୍କ ନେତୃତ୍ୱରେ ଯାଇଥିବା ପ୍ରଥମ ପଦଯାତ୍ରୀ ଦଳ ଇଞ୍ଚୁଡ଼ି ଭୂଇଁ ଛୁଉଁ ଛୁଉଁ ଧରାହୋଇଗଲେ ।

ଆଚାର୍ଯ୍ୟ ମହାଶୟଙ୍କ ସହ ଦ୍ୱିତୀୟ ଦଳ ତା' ପରଦିନ ଇଞ୍ଚୁଡ଼ି ଅଭିମୁଖେ ବାହାରିବାବେଳେ ମୁଁ କାମେରା ଧରି ଆଗରେ ଠିଆ ହେବା ମାତ୍ରେ ମୋତେ କହିଲେ, "କରେ ଗୁଳାଆସିଲୁ । ମନା କଲି, ଶୁଣିଲୁ ନାହିଁ ; ହଉ, ଆଜି ଫେରିଯା । ପରୀକ୍ଷା ଦେଇସାରି ଆସିବୁ ।" ସେଠାରେ ହାଓ୍ୱା ଏପରି ସରଗରମ ଯେ ଆଉ କ ପାଠପଢ଼ା କଥା ମନରେ ରହେ ? ଏବେ ଭାବୁଛି ମୋଭଳି ପରି ସହସ୍ର ଛାତ୍ର ସତ୍ୟବାଦୀ ବନବିଦ୍ୟାଳୟରେ ପାଠ ପଢ଼ୁଥିଲେ । କିଏ କେଉଁ ଆଡ଼େ ବିଦାୟ ନେଇ ବର୍ଷ ବର୍ଷ କାଳ ଅଲଗା ହୋଇଥିଲେ ସୁଦ୍ଧା ଗୁରୁ ଶିଷ୍ୟଙ୍କର ସୁମଧୁର ସମ୍ପର୍କ କପରି ତାଙ୍କର ମନରେ ଜାଗ୍ରତ ଥିଲା । ମଝିରେ ମଝିରେ କେତେଥର ଦେଖା ହୋଇଛି । ଦୀର୍ଘ ତିରିଶ ବର୍ଷ ପରେ ଆଖିକୁ ଦେଖା ନ ଯାଉଥିବା ବେଳେ ଦେହ ଆଉଁସି ସେ ଚିହ୍ନି ପାରି ଦୁଃଖ ସୁଖ ପଚାରିଥାନ୍ତି । ଆଜି କ ଆଠ ଦଶବର୍ଷ ହେବ ପୁରୀଠାରେ ଯାଇ ଦେଖାକଲି । ପଦସ୍ପର୍ଶ କରି ପ୍ରଣାମ କରିବା ସଙ୍ଗେ ସଙ୍ଗେ କପରି ଜାଣିଲେ କେଜାଣି କହିଲେ, – 'କରେ ନବ ! ଶଙ୍ଖ ବାସନ ପବା ତିଆରି କରୁଚୁ, ମୋତେ ଗୋଟିଏ ଗ୍ଲାସ ଦେଲୁ ନାହିଁ, ମୁଁ ପାଣି ପିଅନ୍ତି ।' ବଡ଼ ଆଶ୍ଚର୍ଯ୍ୟ ହୋଇଗଲି । ଆଖି କ ଦିଶୁ ନାହିଁ ମୋ ପାଟି ନ ଫିଟୁଣୁ ସେ କପରି ମୋତେ ଚିହ୍ନିଲେ । ପଚାରିଲି, କହିଲେ—"ଯାହାଙ୍କୁ ମଣିଷ କରିବାକୁ ଚେଷ୍ଟା କରିଥିବ ତାଙ୍କୁ ଚିହ୍ନିବ ନାହିଁ ?" ଜୀବନକାଳ ମଧ୍ୟରେ ବହୁ ଶିକ୍ଷକ ବହୁ ଅଭିଭାବକଙ୍କର ସାହଚର୍ଯ୍ୟ ମିଳିଚି, କିନ୍ତୁ ଆଚାର୍ଯ୍ୟଙ୍କ ପରି ହିତାକାଂକ୍ଷୀ ପରମ ସ୍ନେହୀ ଗୁରୁଦେବ ମିଳି ନାହାନ୍ତି ।"

ପୂର୍ବେ କୁହାଯାଇ ଅଛି, ଆଚାର୍ଯ୍ୟେ କପରି ଉତ୍କଳ ବିଶ୍ୱବିଦ୍ୟାଳୟର Doctorate ଉପାଧି ଗ୍ରହଣ କରିବାକୁ ଅସମ୍ମତି ପ୍ରକାଶ କରିଥିଲେ ।

କିନ୍ତୁ ସମ୍ମାନ ଓ ଉପାଧି ତାଙ୍କୁ ଗୁରୁତ୍ବ ବା କମିତ ? କେଉଁ ବ୍ୟକ୍ତି କିମ୍ବା ଅନୁଷ୍ଠାନମାନ ତାଙ୍କୁ ଉପାଧିରେ ଭୂଷିତ କରିବାକୁ ଲାଳାୟିତ, ତାହାର ସଂଖ୍ୟା ନାହିଁ । ଅଧ୍ୟାପକ ଗଣେଶ୍ବର ମିଶ୍ର ତାଙ୍କର 'ଆଚାର୍ଯ୍ୟ ମହାଶୟ' ପ୍ରବନ୍ଧରେ ଲେଖିଅଛନ୍ତି, "ଆଚାର୍ଯ୍ୟ ମହାଶୟ ଯେ ଏ ଦେଶର ଜଣେ ଶ୍ରେଷ୍ଠ ଶିକ୍ଷକ ଥିଲେ, ହୁଏତ ତାହାର ସ୍ମାରକୀ ସ୍ବରୂପ ଦେଶବାସୀ ତାଙ୍କ ନାମ ସହିତ 'ଆଚାର୍ଯ୍ୟ' ଉପାଧିଟା ଯୋଡ଼ି ଦେଇଛନ୍ତି । ସେ କିନ୍ତୁ କୌଣସି ଉପାଧି ପସନ୍ଦ କରୁ ନ ଥିଲେ । ପ୍ରାୟ ସାତବର୍ଷ ତଳେ ଦିନେ ହଠାତ୍ ଓଡ଼ିଶା ସାହିତ୍ୟ ଏକାଡେମୀର ଜଣେ ପ୍ରତିନିଧି କାର୍‌ରେ ଗୋପବନ୍ଧୁ ଭବନରୁ ଆଚାର୍ଯ୍ୟ ମହାଶୟଙ୍କୁ ରବୀନ୍ଦ୍ର ମଣ୍ଡପକୁ ନେଇ ଆସିଲେ ଓ ସେଠାରେ ଅନ୍ୟ କେତେକ ବୟୋଜ୍ୟେଷ୍ଠ ପଣ୍ଡିତଙ୍କ ସହିତ ତାଙ୍କୁ ଏକ ମାନପତ୍ର ପ୍ରଦାନ କରାଗଲା ।

ଏ ସମ୍ବାଦ ସେତେବେଳେ ଓଡ଼ିଶାର ସମ୍ବାଦପତ୍ର ମାନଙ୍କରେ ପ୍ରକାଶ ପାଇଥିଲା । କିନ୍ତୁ ମାନପତ୍ରର ଉତ୍ତର ଦେଇ ଆଚାର୍ଯ୍ୟ ମହାଶୟ ଯାହା କହିଥିଲେ, ତାହା କୌଣସି ସମ୍ବାଦପତ୍ର ପ୍ରକାଶ କରି ନ ଥିଲେ । ସେଦିନ ଆଚାର୍ଯ୍ୟ ମହାଶୟ କହିଥିଲେ, ସେ ଗୁରୁଦ୍ରୋହ କରିବା ପରି ଅନୁଭବ କରୁଛନ୍ତି । କୌଣସି ଉପାଧି ବା ସମ୍ମାନ ଗ୍ରହଣ ନ କରିବା ପାଇଁ ସେ ଗୁରୁଙ୍କ ନିକଟରେ ପ୍ରତିଜ୍ଞା କରିଥିଲେ । ତାଙ୍କୁ ଯେ ସାହିତ୍ୟ ଏକାଡେମୀ ପକ୍ଷରୁ ସମ୍ମାନିତ କରିବାକୁ ଅଣାଯାଇଥିଲା, ତାହା ତାଙ୍କୁ କୁହାଯାଇଥିଲେ ସେ ଆଦୌ ଆସି ନ ଥାନ୍ତେ ।"

ହରିହରଙ୍କ ଶିକ୍ଷକ ଜୀବନ ସତ୍ୟବାଦୀରେ ଶେଷ ହେଲା ନାହିଁ । ସେ ଶିକ୍ଷାଦାନର ସୁଯୋଗ ସବୁବେଳେ ଖୋଜିଛନ୍ତି ମଧ୍ୟ । ୧୯୩୦ରେ ହଜାରିବାଗ୍ ଜେଲ୍ ମଧ୍ୟରେ ବନ୍ଦୀମାନଙ୍କୁ ପଢ଼ାଇବାର ଓ ଧର୍ମୋପଦେଶ ଦେବାର ଦାୟିତ୍ବ ସରକାର ତାଙ୍କ ଉପରେ ଦେଲେ । ୧୯୪୨ରେ 'ଭାରତ ଛାଡ଼' (Quit India) ଆନ୍ଦୋଳନରେ ଯୋଗ ଦେଇ ଯେତେବେଳେ ବ୍ରହ୍ମପୁର ଜେଲରେ ଆବଦ୍ଧ ହୋଇ ରହିଲେ ସେତେବେଳେ ଦୁଇବର୍ଷ କାଳ ପ୍ରତିଦିନ ଜଗନ୍ନାଥ ଦାସ, ଲୋକନାଥ ମିଶ୍ର, ଗୋପବନ୍ଧୁ

ଚୌଧୁରୀ ଓ ଭଗୀରଥି ମହାପାତ୍ରଙ୍କୁ ନେଇ ଗୀତା କ୍ଲାସ ଖୋଲି ଦେଲେ ଏବଂ ସେହିଠାରେ ହିଁ ଶ୍ରୀମଦ୍‌ଭଗବତ୍ ଗୀତା ରଚିତ ହୋଇଥିଲା । କିନ୍ତୁ ଗୀତା ରଚନା ସମୟ ୧୯୪୨ ନୁହେଁ । ଏହା ତାର ବହୁ ପୂର୍ବରୁ ରଚିତ ହୋଇଥିବାର ସାକ୍ଷ୍ୟ ମିଳେ । ତାଙ୍କ ସାନ ଭାଇ ଗୋବିନ୍ଦ ଦାଶ ସତ୍ୟବାଦୀ ଡାକ୍ତରଖାନାରେ ପୀଡ଼ିତ ହୋଇ ପଡ଼ିଥିବା ବେଳେ ଆଚାର୍ଯ୍ୟ ହରିହର ସେଠାରେ ରହି ଭାଇଙ୍କର ସେବା ଶୁଶ୍ରୂଷା କରୁଥିଲେ । ଗୋବିନ୍ଦଚନ୍ଦ୍ର ଆମକୁ କହୁଥିଲେ, "ଭାଇନା ସତ୍ୟବାଦୀ ଡାକ୍ତରଖାନାରେ ମୋ ପାଖରେ ବସି ଗୀତ ଲେଖୁଥିବାର ମୁଁ ଜାଣେ ।"

ସେ ଯାହା ହେଉ, ୧୯୭୭ ମସିହାକୁ ଗୀତାର କେତେ ଯେ ସଂସ୍କରଣ ମୁଦ୍ରିତ ହୋଇଅଛି ତାହାର ସଂଖ୍ୟା ନାହିଁ । ଏବେ ମଧ୍ୟ ତାହାର ମୁଦ୍ରଣ କାର୍ଯ୍ୟ ଅବ୍ୟାହତ ରହିଛି ।

ଜ୍ଞାନମଣ୍ଡଳ ପ୍ରଣେତା ଶ୍ରୀଯୁକ୍ତ କାନୁନଗୋ କହନ୍ତି,—"ମହାତ୍ମା ଗାନ୍ଧୀ ସେତେବେଳେ ଦେଶବାସୀଙ୍କୁ ଆହ୍ୱାନ କଲେ ନୂତନ ଶିକ୍ଷା ବା 'ନୟୀତାଲିମ୍'ର ପ୍ରବର୍ତ୍ତନ ପାଇଁ । 'ଉତ୍କଳ ମୌଳିକ ଶିକ୍ଷା ପରିଷଦ' ଗଠନ କରାଗଲା । ସେହି ପରିଷଦର ସଭାପତି ଥିଲେ ଆଚାର୍ଯ୍ୟ ହରିହର । ସେ ଯେଉଁ କ୍ଷେତ୍ରରେ ଥାଆନ୍ତୁ ନା କାହିଁକି "ଶିକ୍ଷକତା" କେବେହେଲେ ଛାଡ଼ିନାହାନ୍ତି ।

ଆଜୀବନ ଆଦର୍ଶ ଶିକ୍ଷକ ହେବା ସଙ୍ଗେ ସଙ୍ଗେ ସେ ଥିଲେ ଜଣେ ଉଚ୍ଚକୋଟିର ସମାଜ ସଂସ୍କାରକ ଏବଂ ଜଣେ ସତ୍ୟନିଷ୍ଠ ସିଦ୍ଧ ପୁରୁଷ । ଆଗରୁ ପଇତା ତ ଛିଣ୍ଡାଇ ପକାଇଥିଲେ, ସତ୍ୟବାଦୀ ସ୍କୁଲରେ ଥିଲାବେଳେ ନିଶ ବି ରଖିଥିଲେ ଏବଂ ମହାତ୍ମା ଗାନ୍ଧିଙ୍କ ପରି 'ହରିଜନ' ଆନ୍ଦୋଳନରେ ସେ ଓଡ଼ିଶାରେ ଅଗ୍ରଣୀ ଥିଲେ । ବ୍ରାହ୍ମଣମାନେ ସେତେବେଳେ ନିଜ ହାତରେ ଲଙ୍ଗଳ ଧରି ଜମି ଚାଷ କରୁ ନ ଥିଲେ । କିନ୍ତୁ ଆଚାର୍ଯ୍ୟ ହରିହର ଓ ପଣ୍ଡିତ କୃପାସିନ୍ଧୁ ହୋତା ନିଜ ହାତରେ ଲଙ୍ଗଳ ଧରି ଭୂଇଁ ଚାଷ କଲେ । ଗାଁର ବ୍ରାହ୍ମଣମାନେ ଏମାନଙ୍କୁ ପ୍ରଥମେ ପ୍ରଥମେ ଘୃଣା କରୁଥିଲେ ଏବଂ ବ୍ରାହ୍ମଣ ଜାତିର ଗୌରବ ଲୁପ୍ତ ହେବାକୁ

ଆଉ ବେଶୀ ଦିନ ନାହିଁ, ଏହି ଚିନ୍ତାରେ ସମସ୍ତେ ବଡ଼ ବ୍ୟାକୁଳ ହେଲେ । କିନ୍ତୁ ପରେ ଯେତେବେଳେ ଏହି ବ୍ରାହ୍ମଣମାନେ ବୁଝିଲେ ଯେ ନିଷ୍କର୍ମା ହୋଇ ବସିବାଠାରୁ ନିଜ ହାତରେ ହଳ କରିବା ବରଂ ଶ୍ରେୟସ୍କର । ସେହି ସମୟରୁ ବ୍ରାହ୍ମଣମାନେ ନିଜେ ହଳ ଧରିଲେ ଏବଂ ଏବେ ମଧ୍ୟ କୌଣସି କୌଣସି ଗ୍ରାମରେ ବ୍ରାହ୍ମଣମାନେ ନିଜ ହାତରେ ହଳ କରିବାର ଦେଖାଯାଏ । ଏହି କୁସଂସ୍କାରକୁ ଆମ ବ୍ରାହ୍ମଣ ସମାଜରୁ ଦୂର କରିଥିଲେ ଆଚାର୍ଯ୍ୟ ହରିହର ଓ କୃପାସିନ୍ଧୁ ହୋତା ପ୍ରଭୃତି ସଂସ୍କାରକଗଣ । ତାଙ୍କର ସଖା କୃପାସିନ୍ଧୁ ହୋତା ବ୍ରହ୍ମପୁରର ଜଣେ ହରିଜନ ବ୍ୟକ୍ତି ଓ ଓଡ଼ିଶାର ପୂର୍ବତନ ମନ୍ତ୍ରୀ ଶ୍ରୀ ମୋହନ ନାୟକଙ୍କୁ ନିଜର ପୋଷ୍ୟପୁତ୍ର ରୂପେ ଗ୍ରହଣ କରିଥିଲେ ଏବଂ ଏହି ନାୟକ ମହାଶୟ ତାଙ୍କର ଶବ ସତ୍କାର ସମୟରେ ତାଙ୍କୁ ମୁଖାଗ୍ନି ଦେଇଥିଲେ । ଏକ ସଭାରେ ବସି ସ୍ପୃଶ୍ୟ ଓ ଅସ୍ପୃଶ୍ୟ ଲୋକମାନେ ଖାଇଲେ । ଏଥିରେ କାହାର ଆପତ୍ତି କିମ୍ବା ଅଭିଯୋଗ ରହିଲା ନାହିଁ ।

ଓଡ଼ିଶାରେ ନାରୀ ସମାଜର ଅଭ୍ୟୁଦୟ ଆଚାର୍ଯ୍ୟ ହରିହରଙ୍କ ଯୋଗୁଁ, ଆଗରୁ କୁହାଯାଇଛି—ସେ ପୁରୀର ବିଧବା ଆଶ୍ରମର ସଭାପତି ଥାଇ ନିରକ୍ଷର ବିଧବାମାନଙ୍କୁ ସମାଜର ନାନା ହିତକର କାର୍ଯ୍ୟ କରିବାକୁ ପ୍ରେରଣା ଦେଉଥିଲେ ଏବଂ ସେମାନଙ୍କର ନିରକ୍ଷରତା ଦୂର କରିଥିଲେ ।

୮ ଗୋପବନ୍ଧୁ ଚୌଧୁରୀଙ୍କର ପତ୍ନୀ ଏବଂ ଓଡ଼ିଶାର ସର୍ବୋଦୟ ଆନ୍ଦୋଳନର କର୍ତ୍ତ୍ରୀ ଶ୍ରୀମତୀ ରମାଦେବୀ ଏ ସମ୍ପର୍କରେ ଲେଖିଅଛନ୍ତି, "ନଈକୂଳ ସନ୍‌ସାଇନ ପଡ଼ିଆ ପାଖ ଘରେ ସବୁ କଂଗ୍ରେସ ଲୋକେ ଆଡ୍‌ଡା କରୁଥିଲେ । ଲବଣ ଆନ୍ଦୋଳନ (୧୯୩୦)ରେ ପ୍ରଥମେ ଆଚାର୍ଯ୍ୟଙ୍କ ସହିତ ମୋର ସାକ୍ଷାତ । ଆମ ଘରୁ ଲବଣ ଆନ୍ଦୋଳନର ସୂତ୍ରପାତ ହେଲା ଓ ଆଚାର୍ଯ୍ୟଙ୍କ ସହ ଆମେ କେତେଜଣ ବାଲେଶ୍ୱରର ଇଂଚୁଡ଼ିକୁ ଲବଣ ସତ୍ୟାଗ୍ରହ କାର୍ଯ୍ୟରେ ଗଲୁ । ଗୋପବନ୍ଧୁ ଚୌଧୁରୀ କଟକରୁ ଧରାହୋଇ ଜେଲ ଗଲେ । ଅନ୍ୟମାନଙ୍କ ମଧ୍ୟରେ ବିଶ୍ୱନାଥ ହୋତା, ମୁରଲୀ ତ୍ରିପାଠୀ ମଧ୍ୟ ଆନ୍ଦୋଳନରେ ଯୋଗ ଦେଇଥିଲେ ।

ତା'ପରେ କୁଜଙ୍ଗଠାରେ ଲୁଣମରା କାମରେ ମୋତେ ନିଯୁକ୍ତ କରାଗଲା ଓ ପରେ ପରେ କଟକରେ ମୋତେ ଗିରଫ୍ କରାଗଲା ।

ନାରୀମାନଙ୍କ ମଧ୍ୟରେ ମାଳତୀଦେବୀ, ସୁଭଦ୍ରା ମହତାବ, ବାଲେଶ୍ୱରର ପ୍ରିୟମ୍ବଦା ଦେବୀ, ଛତ୍ରପୁରର ଲକ୍ଷ୍ମୀ ବାଈ ଓ ସରଳା ଦେବୀ ଆଦି ଏଥିରେ ଲବଣ ଆନ୍ଦୋଳନରେ ଯୋଗ ଦେଇଥିଲେ । ଆମ ସମସ୍ତଙ୍କ ଆଦର୍ଶ ଥିଲେ ଆଚାର୍ଯ୍ୟ ମହାଶୟ । ବେଳେବେଳେ ବହୁତ ଥଣ୍ଡା କଥା କହି, ନାନାଦି ଗପ କରି ଆମକୁ କର୍ତ୍ତବ୍ୟରେ ଅନୁପ୍ରାଣିତ କରୁଥିଲେ । ଆମର ସମସ୍ତ କ୍ଳାନ୍ତି ତାଙ୍କ ସାହଚର୍ଯ୍ୟରେ ଦୂର ହୋଇଯାଇ ମନରେ ଗଭୀର ପ୍ରତ୍ୟୟ ସୃଷ୍ଟି ହେଉଥିଲା । ପ୍ରାଚୀନକାଳର ମୁନି ଋଷିମାନଙ୍କ ପରି ଆଚାର୍ଯ୍ୟ ସଦାବେଳେ ଉପଦେଶ ଦେଉଥିଲେ, "ଭଲ ମଣିଷ ହୁଅ । ଭଲ ମଣିଷ ହେବା ପାଇଁ ଭଲ ଘର, ଭଲ ଗାଡ଼ି, ଭଲ ପୋଷାକ, ଭଲ ପାଞ୍ଚି ସୁଆଦିଆ ଖାଦ୍ୟ ଲୋଡ଼ା ହୁଏ ନାହିଁ । ବରଂ ବିଳାସ ବିଭବ, ମଣିଷକୁ ଅମଣିଷ କରେ । ସବୁ କ୍ଷେତ୍ରରେ ଭଲ ମଣିଷ ଆବଶ୍ୟକ । ତମେ ଇଞ୍ଜିନିୟର ହୁଅ, ଡାକ୍ତର ହୁଅ, ଓକିଲ ହୁଅ, ବ୍ୟବସାୟୀ ହୁଅ, ବୈଜ୍ଞାନିକ ହୁଅ ବା ଶିକ୍ଷକ ହୁଅ, ସବୁ କ୍ଷେତ୍ରରେ ଭଲ ମଣିଷ ଆବଶ୍ୟକ ।" ଏହା ହିଁ ଥିଲା ଆଚାର୍ଯ୍ୟ ମହାଶୟଙ୍କର ସମସ୍ତଙ୍କୁ ଉପଦେଶ । କିନ୍ତୁ ଏ କଥା ଅନେକ ଶୁଣି ନାହାନ୍ତି । ଆଚାର୍ଯ୍ୟ ମହାଶୟ ସାଧନାର ଯେଉଁ ଚରମ ସୀମାରେ ପହଞ୍ଚିଥିଲେ ତାହା ଜୀବଦ୍ଦଶାରେ ବା ବଞ୍ଚିଥିଲାବେଳେ ଅଧିକାଂଶ ଜାଣି ପାରିଲେ ନାହିଁ ।

ସେ କିପରି ଭଗବାନଙ୍କର ନାମ ଜପ କରି ରୋଗୀମାନଙ୍କୁ ଆରୋଗ୍ୟ କରିପାରନ୍ତି, ତାହାର ଗୋଟିଏ ପ୍ରତ୍ୟକ୍ଷ ଉଦାହରଣ ତାଙ୍କର ଶେଷ ବୟସର ଏକମାତ୍ର ଏକନିଷ୍ଠ ସେବକ ଶ୍ରୀ ସଚ୍ଚିଦାନନ୍ଦ ମହାନ୍ତି ଆମକୁ ଦେଇଛନ୍ତି,—

"ସବୁ ଦିନପରି ସକାଳେ ଆଚାର୍ଯ୍ୟ ମହାଶୟ ସମୁଦ୍ର କୂଳକୁ ବୁଲି ଆସି ଡାକ୍ତର ମହାଦେବ ବାବୁଙ୍କ ଘରେ ପହଞ୍ଚିଲେ । ମହାଦେବ-

ବାବୁ ବାସ୍ତରୁଦ୍ଧ କଣ୍ଠରେ ତାଙ୍କର ଗୋଟିଏ ନାତୁଣୀ ଗତ କାଲିଠାରୁ ପଡ଼ିଯାଇ ବେହୋସ ଅବସ୍ଥାରେ ପୁରୀ ଡାକ୍ତରଖାନାରେ ଥିବା କଥା ଆଚାର୍ଯ୍ୟ ମହାଶୟଙ୍କୁ ବତାଇଲେ । ଆଚାର୍ଯ୍ୟ ମହାଶୟ ସାଙ୍ଗେ, ସାଙ୍ଗେ, ପୁରୀ ଡାକ୍ତରଖାନାର ଉପର ମହଲକୁ ଗଲେ ଓ ସେ ରୋଗୀର ବିଛଣା ପାଖରେ ବସି ପଡ଼ି ତାଙ୍କୁ ଆଉଁସିବାକୁ ଲାଗିଲେ; କିନ୍ତୁ ମୁଁ ଲକ୍ଷ୍ୟ କରୁଥାଏ ଆଚାର୍ଯ୍ୟ ମହାଶୟଙ୍କ ହାତ ରୋଗୀର ଦେହ ଉପରେ ସୂତାଏ ଛାଡ଼ି ଯାଆ ଆସ, କରୁଥାଏ । ରୋଗୀ ଶରୀରକୁ ସ୍ପର୍ଶ କରୁ ନଥାଏ ।

ସେଠାରୁ ଫେରି ଗୋପବନ୍ଧୁଭବନରେ ପହଞ୍ଚି ଆଚାର୍ଯ୍ୟ ମହାଶୟ ବିଛଣାରେ ବସି ତାଙ୍କ ଜପମାଳାଟି ମାଗିଲେ । ମୁଁ ପଚାରିଲି,—"ବର୍ତ୍ତମାନ ଦିନ ଦଶଟା ହେଲାଣି, ମାଳା କ'ଣ ହେବ ?" ଟିକିଏ ବିରକ୍ତି ପ୍ରକାଶ କରି କହିଲେ,—"ସବୁକଥା ନ ଜାଣିଲେ କ'ଣ ହେବ ନାହିଁ । କାହାରିକୁ କିଛି କହିବା ଦରକାର ନାହିଁ । ମାଳାଡବାଟି ଦିଅ ।" ମୁଁ ମାଳା ଡବାଟି ତାଙ୍କ ହାତକୁ ବଢ଼ାଇ ଦେଲି । ସେ ଜପରେ ଲାଗିଗଲେ । ୧୨ଟା ପରେ ଜପ ଶେଷ କରି ଖାଇଲେ, ଅଳ୍ପ ସମୟ ବିଶ୍ରାମ ନେଇ ପୁଣି ଜପ ଆରମ୍ଭ କଲେ ।

ଏହିପରି ତିନିଁ ଅରିଦିନ ମଧ୍ୟ ଅବେଳରେ (ସବୁଦିନେ ଆଚାର୍ଯ୍ୟ ମହାଶୟ ରାତି ଅଢ଼େଇଟାରୁ ଛଅଟା ପର୍ଯ୍ୟନ୍ତ ଜପ ଇତ୍ୟାଦି କରନ୍ତି ) ଜପ ପରେ ଖାଇବାର ବିଳମ୍ବ ହେବାରୁ ମତେ କହିଲେ କ'ଣ ମୋର ଖାଇବା ଡେରି ହୋଇଗଲା କି ? ମୁଁ କହିଲି ମାନବ ସେବା ଯାହାର ବ୍ରତ ତାହାର ସ୍ୱ ସେବାର ସହଳ ବିଳମ୍ବର ପ୍ରଶ୍ନ କାହିଁ ? ମୋ କାନ୍ଧରେ ହାତମାରି ନେଇ କହିଲେ ଠିକ୍ ବୁଝିଛ । ମୁଁ ସଙ୍ଗେ ସଙ୍ଗେ, ଉତ୍ତର-ଦେଲି,—"ଆପଣଙ୍କୁ ଠିକ୍ ଠିକ୍ ଭାବରେ ବୁଝିବା ଅସମ୍ଭବ ।" ସେ ଖାଇଲେ ବିଶ୍ରାମ ନେଲେ । ସେଦିନ ମଧ୍ୟ ସେ ରୋଗୀକୁ ଦେଖିବା ପାଇଁ ଡାକ୍ତରଖାନା ଗଲେ । ରୋଗୀ ମା' ଠାରୁ ଶୁଣିଲେ ତାର ଚେତା ଫେରି ଆସିଛି । ତିନିଁ ଆରିଦିନ ସମୁଦ୍ରକୂଳରେ ବୁଲିଲାବେଳେ କହିପକାଇଲେ— "କିଏ କହୁଛି ମନ୍ତ୍ର ଏ ଯୁଗରେ କାମ କରେ ନାହିଁ ବୋଲି, ସେ

ରୋଗୀର ଚେତା ଫେରିବ କି ନାହିଁ ସେ ବିଷୟରେ ଡାକ୍ତରମାନେ ସନ୍ଦିହାନ ଥିଲେ । ତାହା ପାଇଁ ମୁଁ ପ୍ରାର୍ଥନା କଲି, ସେ ଭଲ ହୋଇଗଲା । ତମେ ଜାଣ, ତାର ବାପା, ମୋର ଅତି ପ୍ରିୟ ଛାତ୍ର ଥିଲା । ମୁଁ ତାର ଅଜା ଓ ବୋଉର ଦୁଃଖ ଦେଖି ସମ୍ଭାଳି ପାରିଲି ନାହିଁ । ତାହା ପାଇଁ ଏ ପ୍ରକ୍ରିୟା (ଜପ) ଫଳପ୍ରଦ ହେଲା । ମୁଁ ସଙ୍ଗେ ସଙ୍ଗେ କହି ପକାଇଲି,—ଆଜ୍ଞା ଆପଣଙ୍କର ଅନେକ ଆଶ୍ରିତ ଲୋକ ଅଛନ୍ତି । ମୁଁ ସେମାନଙ୍କୁ ଏକଥା ଜଣାଇଁ ଦିଏ । ତାହା ହେଲେ କାହାର କେତେବେଳେ ବିପଦ ଆପଦ ପଡ଼ିଲେ ସେ ଆପଣଙ୍କର ଶରଣାଗତ ହେବ ।

ଏ କଥା ଶୁଣିଲା ମାତ୍ରକେ ସେ ଗଦ୍‌ଗଦ୍ କଣ୍ଠରେ ଛଳଛଳ ଆଖିରେ କହି ପକାଇଲେ, —"ସଚିବାବୁ ରକ୍ଷାକର । ଏକଥା ପ୍ରଘଟ ହେଲେ ମୋ ପାଖରେ ରନ୍ତଲେଇ ହୋଇଯିବ । ମନେରଖ, ମୋ ବଞ୍ଚିବା ଭିତରେ ଏକଥା କାହାରିକୁ କହିବ ନାହିଁ ।" ମୁଁ ସେଦିନ ତାଙ୍କୁ ସମୁଦ୍ର କୂଳରେ ସେ ଅବସ୍ଥାରେ ଦେଖି ଓ ତାଙ୍କ କଥା ଶୁଣି ଅଭିଭୂତ ହୋଇଗଲି । ମନେ ପଡ଼ିଲା, ପରମହଂସ ରାମକୃଷ୍ଣ କହିଥିଲେ,—"ପ୍ରତିଷ୍ଠା ଶୂକରୀ ବିଷ୍ଠା ।" ମୁଁ କହିଲି, "ସତେ ଆପଣ କେତେ ବଡ଼ ସିଦ୍ଧ ପୁରୁଷ, ଅଥଚ ନିଜକୁ ଲୁଚାଇ ଲୁଚାଇ ଚାଲିଯିବେ । ମୁଁ ଜବାବ ଦେଉଛି, ଏ କଥା ଆପଣ ବଞ୍ଚିଥିବା ମଧ୍ୟରେ କାହାରିକୁ କହିବ ନାହିଁ ।"

ଆଉଥରେ ପୁରୀର ଜଣେ ପ୍ରତିଷ୍ଠିତ ପଣ୍ଡିତ ରୋଗରେ ପଡ଼ିଲେ । ଆଚାର୍ଯ୍ୟ ମହାଶୟ ମତେ ସଙ୍ଗରେ ନେଇ ରୋଜ ତାଙ୍କୁ ଦେଖିବାକୁ ଯାଉଥାନ୍ତି । ଉକ୍ତ ପଣ୍ଡିତ ମହାଶୟ ବାରମ୍ବାର ଆଚାର୍ଯ୍ୟ ମହାଶୟଙ୍କୁ ଅନୁରୋଧ କଲେ ତାଙ୍କ ଆରୋଗ୍ୟ ପାଇଁ ପ୍ରାର୍ଥନା କରିବାକୁ । ଆଚାର୍ଯ୍ୟ ମହାଶୟ ତାଙ୍କ ପାଇଁ ଜପ ଧ୍ୟାନ କଲେ ଏବଂ ସେ ପଣ୍ଡିତ ମହାଶୟ ସେଥର ରୋଗ ମୁକ୍ତ ହୋଇ ପ୍ରାୟ ଏ ୬ ବର୍ଷ ବଞ୍ଚିଲେ ।

× × × ×

ଗୋଟିଏ ଝିଅ ଆଚାର୍ଯ୍ୟ ମହାଶୟ, ଗୋପବନ୍ଧୁ ଚୌଧୁରୀ ଓ ରମା ଦେବୀଙ୍କ ପାଖରେ ତାଲିମ୍ ପାଇ ପୁରୀର ଜଣେ ପ୍ରତିଷ୍ଠିତ ଲୋକଙ୍କୁ

ବିବାହ କରିଛନ୍ତି । ସେ ଝିଅର ବିଭାଘରର ଆଠ, ନଅ ବର୍ଷ ପର୍ଯ୍ୟନ୍ତ କୌଣସି ପିଲାପିଲି ହେଲା ନାହିଁ । ଦିନେ ସେ ଝିଅଟି କପିଳ ବାଣ୍ଟିଲା ସ୍ନେହରେ ଆଚାର୍ଯ୍ୟ ମହାଶୟଙ୍କୁ ରଘୁନାଥଙ୍କର କିଛି ମିଷ୍ଟାନ୍ନ ପ୍ରସାଦ ଖୁଆଇ ଦେଲା ଏବଂ ତା'ପରେ ସେହି ଘଟଣାକୁ କେନ୍ଦ୍ର କରି ଆଚାର୍ଯ୍ୟ ମହାଶୟଙ୍କୁ ଅନୁରୋଧ କରାଗଲା ଯେ ଯଦି ସେ ( ଆଚାର୍ଯ୍ୟ ମହାଶୟ ) ତାହାପାଇଁ ପ୍ରାର୍ଥନା କରିବେ ତାହେଲେ ତା'ର ମନୋବାଞ୍ଛା ପୂର୍ଣ୍ଣ ହେବ । ସତକୁ ସତ ତା'ର କେତେ ଦିନ ପରେ ସେ ଝିଅଟି ଗର୍ଭ ଧାରଣ କଲା ଓ ପରେ ପୁରୀ ଡାକ୍ତରଖାନାରେ ତାର ଗୋଟିଏ ଝିଅ ହେଲା ।

ମୁଁ 'ଆଚାର୍ଯ୍ୟ ପରିକ୍ରମା' ବହିରେ ୧୯୭୩) 'ଜନ୍ମସିଦ୍ଧ ଆଚାର୍ଯ୍ୟ ହରିହର' ବୋଲି ଯେଉଁ ଲେଖାଟି ଲେଖିଥିଲି, ତାହାଠାରୁ ଆହୁରି ପ୍ରତ୍ୟକ୍ଷ ଭାବରେ ମା'ଆ ହରଚଣ୍ଡୀ, ଆଚାର୍ଯ୍ୟ ମହାଶୟଙ୍କ ପ୍ରାର୍ଥନା ଫଳରେ ତାଙ୍କର ସାନଭାଇ ଗୋବିନ୍ଦ ଚନ୍ଦ୍ର ଦାସଙ୍କୁ ତାଙ୍କ ରୋଗ ଶଯ୍ୟା ପାଖରେ ସାକ୍ଷୀଗୋପାଳ ଡାକ୍ତରଖାନାରେ ଦର୍ଶନ ଦେଇଥିଲେ । ସମସ୍ତ ଘଟଣା ପୁଙ୍ଖାନୁପୁଙ୍ଖ ବର୍ଣ୍ଣନା କଲେ ଏ ପୁସ୍ତକର କଳେବର ବୃଦ୍ଧି ଘଟିବ । ତେଣୁ ସେଥିରୁ ବିରତ ହେଲି । ପରେ ମୋର 'ଆଚାର୍ଯ୍ୟ ସାନିଧ୍ୟ' ବହିରେ ସମସ୍ତ ଘଟଣା ବର୍ଣ୍ଣନା କରିବାର ଆଶା ରହିଲା ।

ଉପର୍ଯ୍ୟୁକ୍ତ ଘଟଣାମାନଙ୍କରୁ ଜଣାଯାଏ ଆଚାର୍ଯ୍ୟ ମହାଶୟ ଜନ୍ମସିଦ୍ଧ ଲୋକ ଥିଲେ । ସେଭଳି ମୁକ୍ତ ଆତ୍ମାଙ୍କୁ ସୃଷ୍ଟିକର୍ତ୍ତା ମାନବ ସମାଜକୁ ଶିକ୍ଷା ଦେବା ପାଇଁ ବରାବର ପଠାନ୍ତି । ଆଚାର୍ଯ୍ୟ ମହାଶୟ କେବେ ହେଲେ ନିଜକୁ ପ୍ରତିଷ୍ଠିତ କରିବା ପାଇଁ ଇଚ୍ଛା କରି ନାହାଁନ୍ତି । ତାଙ୍କ ଆତ୍ମା ଏବେ ବି ମାନବ ସମାଜର ମଙ୍ଗଳ ପାଇଁ କାର୍ଯ୍ୟ କରୁଛି । ଯଦି କେହି, ପରୀକ୍ଷା କରିବାକୁ ଚାହାନ୍ତି, "ସେ ଆଚାର୍ଯ୍ୟ ମହାଶୟଙ୍କର ମୂର୍ତ୍ତିକୁ ନିଜ ମନ ମଧ୍ୟରେ ଚିନ୍ତାକରି ଧ୍ୟାନସ୍ଥ ହୁଅନ୍ତୁ ଓ ତାଙ୍କର ଇପ୍‌ସିତ ଫଳ ମିଳୁଛି କି ନାହିଁ ପରୀକ୍ଷା କରି ଦେଖନ୍ତୁ ।"

ସତ୍ୟବାଦୀରୁ ବିଦାୟ ନେଇ ଆଚାର୍ଯ୍ୟ ହରିହର ନାନା ଜନମଙ୍ଗଳକର କାର୍ଯ୍ୟରେ ବ୍ୟାପୃତ ରହିଲେ । ଗୋପବନ୍ଧୁ କାରାବରଣ

କରି ସାରିଲା ପରେ ତାଙ୍କୁ ଜଗତଟା ଅନ୍ଧକାରମୟ ଦେଖାଗଲା । କିନ୍ତୁ ପରେ ପରେ ତାଙ୍କ ଉପରେ ଅର୍ପଣ କରାଗଲା 'ସମାଜ'ର ସାପ୍ତାହିକ ସଂମ୍ପାଦନା । ସେ ଦାୟିତ୍ୱ, ସେ ଦକ୍ଷତାର ସହିତ ପରିଚାଳନା କଲେ । ଏହାଛଡ଼ା ପାଇଁ ଉତ୍କଳ ପ୍ରାଦେଶିକ କଂଗ୍ରେସର କାର୍ଯ୍ୟ ମଧ୍ୟ ଚଳାଇଲେ । ୧୯୩୧ ମସିହାରେ ଆଚାର୍ଯ୍ୟ ମହାଶୟ ଉତ୍କଳ ପ୍ରଦେଶ କଂଗ୍ରେସର ସଭାପତି ଥିବାବେଳେ, ଭାରତ ଜାତୀୟ କଂଗ୍ରେସର ୪୭ଶ ବାର୍ଷିକ ଅଧିବେଶନ ଓଡ଼ିଶାରେ ଅନୁଷ୍ଠିତ କରିବାକୁ ସ୍ଥିର ହୋଇଥିଲା । ମାଳକଣ୍ଠ ଏହି କଂଗ୍ରେସର ଅଭ୍ୟର୍ଥନା ସଭାର ସଭାପତି ଥିଲେ । ପୁରୀରେ ଅଧିବେଶନ ପାଇଁ ଖୁବ୍ ଦ୍ରୁତଗତିରେ ଟ ୨୫ ଲେଖାଏଁ ସଭ୍ୟ ଚାନ୍ଦା ଆଦାୟ କରାଗଲା । ସେତେବେଳେ ବିଲାତରେ ଭାରତକୁ ପୂର୍ଣ୍ଣ ସ୍ୱାଧୀନତା ଦିଆଯିବ କି ନାହିଁ, ସେ ବିଷୟ ଆଲୋଚନା କରିବାକୁ ଲଣ୍ଡନରେ ବୈଠକ ବସିଲା । ମହାତ୍ମା ଗାନ୍ଧି ଏହି ବୈଠକରେ ଆଣ୍ଠୁ ନ ଲୁଚୁ ଖଦି ପିନ୍ଧି, ଏବଂ ଖଦଡ଼ ଚାଦରଟିଏ କାନ୍ଧରେ ପକାଇ ଏହି ଗୋଲ୍ ଟେବୁଲ୍ ବୈଠକ ଓ ଇଂଲଣ୍ଡର ରାଜା ପଞ୍ଚମ ଜର୍ଜଙ୍କ ପାଖେ ଉପସ୍ଥିତ-ହୋଇ ତାଙ୍କ ପାଖରେ ବି ଭାରତର ପୂର୍ଣ୍ଣ ସ୍ୱରାଜ୍ୟ ଦାବିକଲେ ।

ଏହି ସମୟରେ ଇଂଲଣ୍ଡର ପ୍ରଧାନ ମନ୍ତ୍ରୀ ଚର୍ଚ୍ଚିଲ ସାହେବ ମହାତ୍ମା ଗାନ୍ଧିଙ୍କୁ ଲକ୍ଷ୍ୟକରି କହିଥିଲେ, 'A half naked Fakir has come to take away Swarajya from us' ଅର୍ଥାତ୍ ଭାରତରୁ ଗୋଟେ ଅର୍ଦ୍ଧ ଉଲଗ୍ନ ଫକିର ଆମଠାରୁ ସ୍ୱରାଜ୍ୟ ନେଇଯିବାକୁ ବସିଛି । ଏହା ସଙ୍ଗେ ସଙ୍ଗେ ଗୋଲ ଟେବୁଲ୍ ବୈଠକ କଂଗ୍ରେସକୁ ପୁଣି 'ବେଆଇନ୍' ଘୋଷଣାକଲା ଏବଂ ଆଚାର୍ଯ୍ୟ ମହାଶୟଙ୍କ ସମେତ ଓଡ଼ିଶାର କଂଗ୍ରେସ ନେତାମାନଙ୍କୁ କାରାବରଣ କରିବାକୁ ପଡ଼ିଲା । ତେଣୁ ଓଡ଼ିଶାରେ କଂଗ୍ରେସ ନ ହେବାର ହେଲା ।

ଶ୍ରୀ ଚନ୍ଦ୍ରଶେଖର ମହାପାତ୍ର 'ଦେଶାତ୍ମବୋଧ ଓ ଜନସେବାର ପ୍ରତୀକ' ପ୍ରବନ୍ଧରେ ତାଙ୍କର ଆଚାର୍ଯ୍ୟଙ୍କ ସଂସ୍ପର୍ଶରେ ଆସିଥିବା ଗୋଟିଏ ଉଲ୍ଲେଖ ଯୋଗ୍ୟ ଘଟଣା ଲିପିବଦ୍ଧ କରି ଅଛନ୍ତି,—

୧୯୪୦ ମସିହାରେ ପୁରୀର ହରିଜନ ସାହିରେ ନିରକ୍ଷରତା ଦୂରୀକରଣ ପାଇଁ ମୁଁ ଗୋଟିଏ ନୈଶ ବିଦ୍ୟାଳୟ ଚଳାଉଥାଏ । ଆଚାର୍ଯ୍ୟ ମହାଶୟ ଏହି ବିଦ୍ୟାଳୟରେ ସାବାଳକ ହରିଜନ ଛାତ୍ରଙ୍କର ଆଗ୍ରହ ଦେଖି ବିଦ୍ୟାଳୟର ମାସିକ କିରାସିମି ଖର୍ଚ୍ଚ ଦୁଇଟଙ୍କା ଲେଖାଏଁ ହରିଜନ 'ସେବକ ଫଣ୍ଡ' ପକ୍ଷରୁ ଦେବାର ବ୍ୟବସ୍ଥା କରିଥିଲେ । ଥରେ ଠକ୍କରବାପା ଆସିଥିଲା ବେଳେ ମଧ୍ୟ ତାଙ୍କୁ ନେଇ ଏହି ବିଦ୍ୟାଳୟ ଦେଖାଇ ଥିଲେ । ତେଣୁ ୧୯୪୫ ମସିହାରେ କାରାମୁକ୍ତ ହେବାପରେ ପୁରୀରେ କିଛି କାର୍ଯ୍ୟ ଆରମ୍ଭ କରିବା ଉଦ୍ଦେଶ୍ୟରେ ହଠାତ୍ ଦିନେ ହାତରେ ବାଡ଼ିଟିଏ ଧରି ଆସି ଉପସ୍ଥିତ ହେଲେ । ମୁଖ ମଣ୍ଡଳ ଲମ୍ବା ଦାଢ଼ିରେ ଆବୃତ୍ତ । ଦେହରେ ଖଣ୍ଡିଏ ଛୋଟ ଖଦଡ଼ ଶୁଭ୍ର ଧୋତି ଓ କାନ୍ଧରେ ଖଣ୍ଡିଏ ଚାଦର । ପାଦରେ ହଳେ ପୁରୁଣା ଚଟି, କାନ୍ଧରେ ଖଣ୍ଡିଏ ଖଦଡ଼ କନାର ବ୍ୟାଗ୍ ଝୁଲୁଥାଏ । ହଠାତ୍ ଆସି ପହଞ୍ଚିବା ପରେ ପ୍ରଥମେ ତାଙ୍କର କିଛିଟା ଚର୍ଚ୍ଚା ପାଇଁ ମୁଁ ବ୍ୟସ୍ତ ହୋଇ ପଡ଼ିବାର ଦେଖି ସେ କହିଲେ, କେବଳ କପେ ଗରମ ଚା' ଦରକାର । ଯାହାହେଉ ଚା' ଓ ପାନ ଦେଇ ପାଖରେ ବସିଲି ତାଙ୍କ ଆଗମନର ଉଦ୍ଦେଶ୍ୟ ବୁଝିବାପାଇଁ । ସେ କହିଲେ, ପୁରୀରେ କ'ଣ କିଛି 'କାମ ହେବ ନା—ସମସ୍ତେ ବ୍ରିଟିଶ୍ ସରକାରଙ୍କ କାମକୁ ନିଆ ହେବେ । ତା'ପରେ 'ଇସ୍କୁଲିଆ' ଶବ୍ଦର ଅର୍ଥ ବୁଝାଇ ସେ କହିଲେ, ଯେ ବ୍ରିଟିଶ ସ୍କୁଲ କଲେଜରେ ପଢୁଅଛି, ଇସ୍କୋ ବ୍ରିଟିଶ ଅପନା ବନାନେକେ ଲିଏ ଲେଯାତା । ବ୍ରିଟିଶ ଶିକ୍ଷା ପଦ୍ଧତିର ଏଭଳି ବ୍ୟଙ୍ଗରେ ଅବଶ୍ୟ ହାସ୍ୟରୋଳ ସୃଷ୍ଟିହେଲା, ମାତ୍ର ତା'ପରେ କିଛି କାମ ବିଷୟରେ ଆଲୋଚନା ଆରମ୍ଭ ହେଲା ।

ବହୁ ଆଲୋଚନା ପରେ ସ୍ଥିର ହେଲା ଯେ ପୁରୀ ଶ୍ରୀମନ୍ଦିର ଚାରିପାଖରେ ସ୍ତୂପାକାରରେ ଜମିଥିବା ଅଳିଆ ସଫା କରିବାକୁ ହେବ । ସ୍ନାନ ପୂର୍ଣ୍ଣିମା ପର ଦିନଠାରୁ ଗୁଣ୍ଡିଚା ପୂର୍ବଦିନ ଅର୍ଥାତ୍ ଉତ୍କଳମଣି ଗୋପବନ୍ଧୁଙ୍କ ଶ୍ରାଦ୍ଧୋତ୍ସବ ପର୍ଯ୍ୟନ୍ତ ଏହି କାମ ଚାଲିବ ବୋଲି ସ୍ଥିରହେଲା । ପୁରୀ କଲେଜର ବହୁ ସଂଖ୍ୟକ ଛାତ୍ର ଏହି କାର୍ଯ୍ୟରେ ଯୋଗ ଦେବାକୁ ପ୍ରବଳ ଆଗ୍ରହରେ ଆଗେଇ ଆସିଲେ । ସେତେବେଳକୁ ଆଚାର୍ଯ୍ୟ

ମହାଶୟଙ୍କର ବୟସ ୭୫ ରୁ ଅଧିକ । ତଥାପି ସକାଳ ୭ ଟାରୁ ୧୨ ଟା ପର୍ଯ୍ୟନ୍ତ ଦୀର୍ଘ ୫ ଘଣ୍ଟା ସେ ଯେପରି ଅବିଶ୍ରାନ୍ତ ପରିଶ୍ରମ କରନ୍ତି, ତାହା ଦେଖି ଯୁବକମାନେ ମଧ୍ୟ ଲଜ୍ଜିତ ହୁଅନ୍ତି । ଏହି କାର୍ଯ୍ୟ ପୂର୍ବରୁ ପ୍ରାୟ ୪ ବର୍ଷ କାଳ ନିୟମିତ ଚାଲିଥିଲା । ଏବେ ତ ଶ୍ରମଦାନ ମାନଙ୍କରେ ଖାଦ୍ୟପେୟ ତୁଳନାରେ କାମପାଇଁ ଅଧିକ ଗୁରୁତ୍ୱ ଦିଆଯାଉ ନାହିଁ ।

ତାଙ୍କ ଜୀବନରେ ବହୁ ଦୁଃଖଦ ଯୁକ୍ତ ଘଟଣା ଘଟିଯାଇଛି । ଗୋପବନ୍ଧୁଙ୍କର ମହାପ୍ରୟାଣ ହେଲା । କୃପାସିନ୍ଧୁ ବହୁ ଆଗରୁ ଦେହତ୍ୟାଗ କରିଥିଲେ । ଗୋଦାବରୀଶ ୭୦ ବର୍ଷ ବୟସରେ ପରଲୋକ ଗମନ କଲେ । ଗୋପବନ୍ଧୁ ଚୌଧୁରୀ ଆଚାର୍ଯ୍ୟଙ୍କୁ ୮୯ ବର୍ଷ ବୟସ ହେଲା ବେଳେ, ଭୂଦାନ କାର୍ଯ୍ୟରେ ବୁଲିବୁଲି ଦେହକୁ ମାଟିରେ ମିଶାଇଦେଲେ ଏବଂ ମହାତ୍ମା ଗାନ୍ଧୀ ୧୯୪୮ ଜାନୁୟାରୀ ୩୦ ତାରିଖରେ ଆତତାୟୀର ଗୁଳିଚୋଟରେ ପ୍ରାର୍ଥନା ସଭାରେ ଢଳି ପଡ଼ିଲେ । କିନ୍ତୁ ଆଚାର୍ଯ୍ୟ ମହାଶୟ 'ଧୀର ଓ ଗମ୍ଭୀର ହୋଇ ଏହି ସକଳ ବଜ୍ରପାତକୁ ଗୋଟି ଗୋଟି କରି ମୁଣ୍ଡପୋତି ସହିନେଲେ । କାରଣ ସେ ଭଗବତ୍ ଗୀତାରୁ ଶିକ୍ଷା କରିଥିଲେ,—

"ଯୋ ନ ହୃଷ୍ୟତି ନ ଦ୍ୱେଷ୍ଟି ନ ଶୋଚତି ନ କାଙ୍କ୍ଷତି,
ଶୁଭାଶୁଭ ପରିତ୍ୟାଗୀ ଭକ୍ତିମାନ୍ୟଃ ସ ମେ ପ୍ରିୟଃ ।
ସମଃ ଶତ୍ରୌ ଚ ମିତ୍ରେ ଚ ତଥା ମାନାପମାନୟୋଃ,
ଶୀତୋଷ୍ଣ ସୁଖଦୁଃଖେଷୁ ସମଃ ସଙ୍ଗବିବର୍ଜିତଃ ।"

"ଅର୍ଥାତ୍ ଯେଉଁ ଲୋକ ପ୍ରିୟ ବସ୍ତୁ ପାଇଲେ ଆନନ୍ଦିତ ହୁଏ ନାହିଁ, ଅପ୍ରିୟ ବସ୍ତୁ ପାଇଲେ ବିକ୍ଷୁବ୍ଧ ହୁଏ ନାହିଁ, ଇଷ୍ଟ ବସ୍ତୁ ନଷ୍ଟ ହେଲେ ସୁଦ୍ଧା ଦୁଃଖିତ ହୁଏ ନାହିଁ, ଯେ ଶତ୍ରୁ ଓ ମିତ୍ରଠାରେ ସମ-ଭାବାପନ୍ନ, ମାନ ଓ ଅପମାନରେ ଅବିଚଳିତ; ଶୀତ, ଗ୍ରୀଷ୍ମ, ସୁଖ ଓ ଦୁଃଖରେ ନିର୍ବିକାର ଚିତ୍ତ, ଆଶକ୍ତି ବିହୀନ, ନିନ୍ଦା ଓ ପ୍ରଶଂସାରେ ବିକାରହୀନ ଓ ସ୍ଥିର ଚିତ୍ତ; ଏହିପରି ଭକ୍ତିମାନ ବ୍ୟକ୍ତି ମୋର ପ୍ରିୟ ।" ଗୀତାର ଏହି ଯେଉଁ ଟୀକା ଓ ଭାଷାନ୍ତର ଆଚାର୍ଯ୍ୟ ନିଜ ଗୀତାରେ ଦେଇଛନ୍ତି, ତାହା ସେ ନିଜେ ଅକ୍ଷରେ ଅକ୍ଷରେ ପାଳନ କରି ଅଛନ୍ତି । ତାହା ନ ହୋଇଥିଲେ ଉପର୍ଯ୍ୟୁକ୍ତ ମହାପ୍ରାଣ ବ୍ୟକ୍ତିମାନଙ୍କର ମୃତ୍ୟୁରେ

ସେ ମର୍ମାହତ ହୋଇ ପଡ଼ୁଥାନ୍ତେ ଏବଂ ନିଜକୁ ଅନାଥ ଓ ନିରାଶ୍ରୟ ବୋଲି ମନେ କରୁଥାନ୍ତେ । କିନ୍ତୁ ତାଙ୍କ ଜୀବନରେ ତାହା କଦାପି ଘଟିନାହିଁ । କାରଣ ଯୀଶୁଖ୍ରୀଷ୍ଟ ନିଜେ କହିଅଛନ୍ତି,—

"Blessed are the meek—
for they shall inherit the earth."

ଗୋପବନ୍ଧୁ 'ବନ୍ଦୀର ଆତ୍ମକଥା' କବିତା ବହିରେ ଲୋକମାନଙ୍କୁ ଉପଦେଶ ଦେଇ କହିଅଛନ୍ତି,—

"କହୁଥିଲି ପରା ବୁଲି ବୁଲି ଗ୍ରାମ
ଦେଶ ପାଇଁ ଦଶ ପାଇଁ କରି କାମ
ମିଳେ ଯଦି କାହା ଭାଗ୍ୟେ କାରାବାସ
କାରା ନୁହଁଇ ସେ ପବିତ୍ର ପ୍ରବାସ"

ଆଚାର୍ଯ୍ୟ ମହାଶୟଙ୍କ ସ୍ୱରରେ ଗୋପବନ୍ଧୁଙ୍କ ଭାବନାର ସଚୋଟ ପ୍ରତିଧ୍ୱନି ଶୁଣାଯାଏ ।

"ସତ୍ୟାନୁ ସନ୍ଧାନେ ଆମର ସଂଗ୍ରାମ
ବଳିଦାନ ପରା ଆମର ବିଶ୍ରାମ"

ଉପଦେଶର ଏହି ମର୍ମସ୍ପର୍ଶୀ ବାଣୀ ମଧୁର ମନ୍ଦ୍ର ଧ୍ୱନିରେ ପୁଣି ଗୁଞ୍ଜିଲିଛି,—

"ମିଶୁ ମୋର ଦେହ ଏ ଦେଶ ମାଟିରେ,
ଦେଶବାସୀ ଚାଲିଯାଆନ୍ତୁ ପିଠିରେ ।
ଦେଶର ସ୍ୱରାଜ୍ୟ-ପଥେ ଯେତେ ଗାଡ଼
ପୂରୁ ତହିଁ ପଡ଼ି ମୋର ମାଂସ, ହାଡ଼ ।
ସ୍ୱାଧୀନତା-ପଥେ ଭଲେ ହେଲେ ନର
ମୋ ଜୀବନ ଦାନେ ହେଉ ଅଗ୍ରସର ।
ମଙ୍ଗଳମୟଙ୍କ ସୁମଙ୍ଗଳ ଇଚ୍ଛା
ପୂରୁ ଏ ପରାଣେ ଏହି ଶେଷ ଭିକ୍ଷା ।"

× × × × × ×

ପୂର୍ବ ପୁରୁଷର ପବିତ୍ର ଶ୍ମଶାନ
ଦେଶର ଜାତିର ଗଉରବ ଗାନ ।



ଗୋ ସେବା—ଆଚାର୍ଯ୍ୟ ହରିହର

ପୁଣ୍ୟ ଜନ୍ମମାଟି, ପୁଣ୍ୟ ଦେବାଳୟ,
ଉଦ୍ଧରିବା ପାଇଁ କଲେ ତନୁକ୍ଷୟ ।
ମାନବ ଜନମ ହୁଅଇ ସଫଳ,
ଏ ମହାଶାନ୍ତା କି ବୁଝିବ ଉତ୍କଳ ?
ଜାତୀୟ ମମତା, ସ୍ୱଗ୍ରାଜନ-ପ୍ରୀତି,
ଉତ୍କଳବାସୀର ହେଉ ଏହା ମତି ।
ନୀରବ ନିଷ୍ଠଳେ ବସି ବନ୍ଦୀଘରେ,
ମାଗେ ଏହି ଭିକ୍ଷା ପ୍ରଭୁ ଶ୍ରୀ ପୟରେ ।"

ଆଚାର୍ଯ୍ୟ ହରିହର ଗୋପବନ୍ଧୁଙ୍କ ମୃତ୍ୟୁପରେ ଦୀର୍ଘ ୪୩ ବର୍ଷ ବଞ୍ଚିଥିଲେ ସୁଦ୍ଧା ସେ ଏହି 'ବନ୍ଦୀର ଆତ୍ମକଥା'ର ଅମୃତମୟ ଉପଦେଶ ବାଣୀରୁ ଦିନେ ହେଲେ ସ୍ଖଳିତ ହୋଇ ନାହାନ୍ତି । ସେ ବକ୍ତୃତାର ପକ୍ଷପାତୀ ନ ଥିଲେ । ନୀରବ, ଅକ୍ଳାନ୍ତ ଓ ଅକାଟ୍ୟ ଦୈନନ୍ଦିନ ପରିଶ୍ରମ ଥିଲା ତାଙ୍କ ଜୀବନର କର୍ତ୍ତବ୍ୟ ।

ତାଙ୍କ ଜୀବନୀ ସମ୍ପର୍କରେ କୁହାଯାଇଅଛି,—"୧୯୩୦ରେ ମହାତ୍ମା-ଗାନ୍ଧି ସ୍ଥିର କରିଦେଲେ ଯେ ପୂର୍ଣ୍ଣ ସ୍ୱାଧୀନତା ହାସଲ ପାଇଁ ଆଇନ ଅମାନ୍ୟ ଆନ୍ଦୋଳନ କରିବାକୁ ହିଁ ହେବ । ସେ ପ୍ରଥମେ ଲବଣ ଆଇନ୍ ଅମାନ୍ୟ କରିବେ । ସେହି ଉଦ୍ଦେଶ୍ୟରେ ଗୁଜୁରାଟର ସାବରମତୀ ଆଶ୍ରମରୁ ସମୁଦ୍ର କୂଳର ଡାଣ୍ଡି ଅଭିମୁଖେ ଯାତ୍ରା କଲେ । ଭାରତର ପ୍ରତି ପ୍ରଦେଶରୁ ଦୁଇଜଣ ଲେଖାଏଁ ମୁଖ୍ୟନେତା ଆଇନ୍ ଅମାନ୍ୟର ଦାୟିତ୍ୱ ନେବେ । ସେମାନେ ଦଳେ ଲେଖାଏଁ ସତ୍ୟାଗ୍ରହୀଙ୍କୁ ସଙ୍ଗରେ ଧରି ଗୋଟିଏ ନିର୍ଦ୍ଦିଷ୍ଟ ଦିନରେ ଲବଣ ଆଇନ୍ ଅମାନ୍ୟ କରିବେ । ସେମାନେ ଗିରଫ ହେଲା ପରେ ଅନ୍ୟମାନେ ନେତୃତ୍ୱ ନେବେ । ଓଡ଼ିଶାରୁ ବଛା ଯାଇଥିଲେ ଗୋପବନ୍ଧୁ ଚୌଧୁରୀ ଓ ଆଚାର୍ଯ୍ୟ ହରିହର । ୬ ତାରିଖ ଦିନ କଟକଠାରୁ ଚୌଧୁରୀ ଓ ଆଚାର୍ଯ୍ୟଙ୍କ ନେତୃତ୍ୱରେ ସତ୍ୟାଗ୍ରହୀ ଦଳ ବାଲେଶ୍ୱରର ଇଞ୍ଚୁଡ଼ି ଅଭିମୁଖେ ବାହାରିଲେ । ଅନ୍ୟ ଗୋଟିଏ ମକଦ୍ଦମାରେ ଓ୍ୱାରେଣ୍ଟ ଥିବାରୁ ଚୌଧୁରୀଙ୍କୁ ଅଧବାଟରୁ ଗିରଫ କରି ନିଆଗଲା । ଆଚାର୍ଯ୍ୟ ହରିହର ଇଞ୍ଚୁଡ଼ି ଅଭିମୁଖେ ଯାତ୍ରା କଲେ । ସେହିଠାରେ ସେ ଏପ୍ରିଲ ୧୩ ତାରିଖ ଦିନ ପ୍ରଥମେ ଲବଣ ଆଇନ୍ ଅମାନ୍ୟ କରିବାକୁ ଯାଇ ଗିରଫ ହେଲେ ।

ମହାତ୍ମା ଗାନ୍ଧିଙ୍କ ଆଇନ୍ ଅମାନ୍ୟ ଆନ୍ଦୋଳନ ବା ସ୍ୱାଧୀନତା ସଂଗ୍ରାମର ପ୍ରଥମ ସେନାପତି ଆଚାର୍ଯ୍ୟ ହରିହରଙ୍କୁ ହଜାରିବାଗ ଜେଲକୁ ପଠାଇ ଦିଆଯାଇଥିଲା । ନେତାମାନଙ୍କ ଆହ୍ୱାନରେ ଓଡ଼ିଶାର ବହୁ ସଂଖ୍ୟକ ସ୍ୱେଚ୍ଛା ସେବକ ସତ୍ୟାଗ୍ରହୀ ତାଲିକାରେ ନାମ ଲେଖାଇଥିଲେ, ଓ ଓଡ଼ିଶାରେ ଜୋରସୋରରେ ସଂଗ୍ରାମ ଚାଲିଥିଲା । ସମସ୍ତଙ୍କ ସାଙ୍ଗରେ ସେ ୧୯୩୧ ମାର୍ଚ୍ଚରେ ଗାନ୍ଧି-ଇରଉଇନ୍ ଚୁକ୍ତି ଫଳରେ ଖଲାସ ହେଲେ । ପୁଣି ଯେତେବେଳେ ୧୯୩୨ରେ ସରକାରଙ୍କ ସହିତ ସଂଘର୍ଷ ହେଲା, ହରିହର ଆଗୁଆ ହୋଇ ବାହାରି ପଡ଼ିଲେ । ୧୯୩୩ ବେଳକୁ ସାମୁହିକ ଆଇନ୍ ଅମାନ୍ୟ ଆନ୍ଦୋଳନ ବନ୍ଦକରି ଦିଆଗଲା । କଂଗ୍ରେସ ଲୋକଙ୍କ ଭିତରେ କେତେକ ପରିମାଣରେ କ୍ଳାନ୍ତି ଦେଖାଦେଇଥିଲା । ତେଣୁ ଗାନ୍ଧିଜୀ ଏପରି କଲେ; କିନ୍ତୁ ତାହା ସଙ୍ଗେ ସଙ୍ଗେ ଏ କଥା ମଧ୍ୟ ଜଣାଇଦେଲେ ଯେ ଯେଉଁମାନଙ୍କ ମନୋବଳ ଠିକ୍ ଅଛି, ଯେଉଁମାନେ ଚାହୁଁଛନ୍ତି ସ୍ୱାଧୀନତାର ସଂଗ୍ରାମ ଚଲାଇ ଯିବାକୁ ହିଁ ହେବ, ସେମାନେ "ବ୍ୟକ୍ତିଗତ ଆଇନ୍ ଅମାନ୍ୟ" କରନ୍ତୁ । ହରିହର ଓ ଗୋପବନ୍ଧୁଙ୍କ ପ୍ରେରଣାରେ ଓଡ଼ିଶାର ଅଳ୍ପ କେତେଜଣ ଲୋକ 'ବ୍ୟକ୍ତିଗତ ଆଇନ୍ ଅମାନ୍ୟ' କରିଥିଲେ ।

ଆଚାର୍ଯ୍ୟ ମହାଶୟ ୧୯୩୪ ମେ' ମାସ ବେଳକୁ ଜେଲରେ ଥାନ୍ତି । ମହାତ୍ମାଗାନ୍ଧି ସେହିମାସ ୯ ତାରିଖ ଦିନ ପୁରୀରୁ 'ହରିଜନ' ପଦଯାତ୍ରା ଆରମ୍ଭ କଲାବେଳେ ହରିହର ଥାଆନ୍ତି ଜେଲ ଭିତରେ । ଯାତ୍ରାର ଶେଷ ବେଳକୁ ସେ ମୁକ୍ତିପାଇ ମହାତ୍ମାଜୀଙ୍କୁ ଆସି ଦେଖା କରିଥିଲେ । ୧୯୪୨ରେ ଯେତେବେଳେ 'ଭାରତ ଛାଡ଼' ଆନ୍ଦୋଳନ ଆରମ୍ଭ ହେଲା, ତେଷଠି, ଚଉଷଠି ବର୍ଷର ବୃଦ୍ଧ ହରିହର ସେଥିରେ ଝାସ ଦେଲେ । ଅଟକବନ୍ଦୀ ଭାବରେ ଦୁଇ ବର୍ଷରୁ ଅଧିକକାଳ ରହିଲା ପରେ ୧୯୪୪ ଶେଷ ଭାଗରେ ଜେଲମୁକ୍ତ ହୋଇଥିଲେ ।"

( ସତ୍ୟର ପୂଜାରୀ ଆଚାର୍ଯ୍ୟ ହରିହର )

— ଶ୍ରୀ ବିନୋଦ କାନୁନ୍‌ଗୋ

# ଭଲ ମଣିଷ ହୁଅ

## ( ଆଚାର୍ଯ୍ୟଙ୍କର ନାନା ଅନୁଭୂତ ଓ ଅଭିଜ୍ଞତା )

— ୭ —

ଆଚାର୍ଯ୍ୟ ମହାଶୟଙ୍କ ଜୀବନରେ ନାନା ଅନୁଭୂତି ଦେଖିବାକୁ ମିଳେ । ସେ ଯେପରି ଥିଲେ ଜଣେ ସାଧକ ଓ ଋଷି, ସେହିପରି ମଧ୍ୟ ସେ ଥିଲେ ଆମ୍ଭମାନଙ୍କ ପରି ଜଣେ ସାଧାରଣ ମଣିଷ ।

ଥରେ ସତ୍ୟବାଦୀରୁ ୩ ମାଇଲ ଦୂରରେ ଥିବା ବିଶ୍ୱନାଥପୁର ଗ୍ରାମରେ ୩, ୪ ଜଣ ସତ୍ୟବାଦୀ ସ୍କୁଲର ପିଲା ରାତିରେ ଏକାଠି ବସି ପାଠ ପଢୁଥାନ୍ତି । କିନ୍ତୁ ଦାଣ୍ଡ ଦୁଆରଟି ଆଉଜା ହୋଇଥାଏ । ପଢ଼ାପଢ଼ି କରୁ କରୁ ବେଳେ ବେଳେ ସେମାନେ ଗଳ୍ପ ସଳ୍ପ ବି କରନ୍ତି । ଏହି ସମୟରେ ଦୁଆର ବାହାରେ ଠକ୍ ଠକ୍ ଶବ୍ଦ ହେଲା । ପିଲେ ଭାବିଲେ ଘରୁ କିଏ ଅବା ଆସି ସେମାନଙ୍କୁ ଖାଇବାକୁ ଡାକୁଛି । ଦୁଆର ଫିଟାଇ ଦେଖିଲେ ବାହାରେ କେହି ନାହାନ୍ତି । ସେମାନଙ୍କ ଭିତରୁ କେହି କେହି ସତ୍ୟବାଦୀ ସ୍କୁଲର ଶିକ୍ଷକମାନଙ୍କର 'କ୍ୟାରିକେଚର' କରୁଥାନ୍ତି । ତହିଁ ଆର ଦିନ ସେମାନେ ଯଥାବିଧି ସ୍କୁଲକୁ ପାଠପଢ଼ିବାକୁ ଗଲେ । ହରିବାବୁ ସେମାନଙ୍କ କ୍ଲାସକୁ ଯାଇ ପଚାରିଲେ, 'ତୁମମାନଙ୍କ ଭିତରୁ କେଉଁମାନେ ତୁମର ଶିକ୍ଷକମାନଙ୍କୁ ଭଲ ରୂପେ କ୍ୟାରିକେଚର କରିପାର ତାହା କହିପାରିବ ?' ବିଶ୍ୱନାଥପୁରରୁ ପଢ଼ିବାକୁ ଆସୁଥିବା ପିଲାମାନେ ଏ କଥା ଶୁଣି ସ୍ତମ୍ଭୀଭୂତ ହେଲେ । ସେମାନଙ୍କର ମନେ ହେଲା, ହରିବାବୁ ପ୍ରତିଦିନ ଏହିପରି ଭାବରେ ପ୍ରତି ନିକଟବର୍ତ୍ତୀ ଗ୍ରାମକୁ ଯାଇ ସେମାନଙ୍କର ପାଠପଢ଼ା ଓ ଚାଲିଚଳନ ଲକ୍ଷ୍ୟ କରନ୍ତି । ଏହି ବିଷୟଟି ଅବସରପ୍ରାପ୍ତ ବିଚାରପତି ଶ୍ରୀ ହରିହର ମହାପାତ୍ର ତାଙ୍କର 'ଇଙ୍ଗିତ' ପ୍ରବନ୍ଧରେ ଉଲ୍ଲେଖ କରିଅଛନ୍ତି । ଉପସଂହାରରେ ସେ ଲେଖିଅଛନ୍ତି, 'ଆଉ କାହା ହାବୁଡ଼ରେ ପଡ଼ିଥିଲେ ସେ ନିଶ୍ଚୟ ଆମକୁ କଠୋର ଭାବରେ ଭର୍ତ୍ସନା କରିଥାନ୍ତେ ।

କିନ୍ତୁ ହରିବାବୁଙ୍କର କୌଶଳ ଥିଲା ଭିନ୍ନ, ଚେତାଇ ଦେବା, ଚେଙ୍ଗାଇ ଦେବା ନୁହେଁ ।'

ସେ ମଧ୍ୟ ଆଉ ଗୋଟିଏ ଘଟଣା ଏ ସମ୍ପର୍କରେ ଉଲ୍ଲେଖ କରି-ଅଛନ୍ତି । ସେ ଥରେ ତାଙ୍କ ପିତାଙ୍କ ସଙ୍ଗେ କଟକ ଯାଇଥିଲେ । ବାଟରେ ଭୂତପୂର୍ବ ୬ ଲୋକନାଥ ପଟ୍ଟନାୟକଙ୍କ ସହିତ ତାଙ୍କ ପିତାଙ୍କର ଦେଖା-ହେଲା । ଲୋକନାଥ ପଟ୍ଟନାୟକ ଥିଲେ ସେ ସମୟର ଜଣେ ପ୍ରବୀଣ ଜିଲ୍ଲା ସ୍କୁଲ ଇନସ୍‌ପେକ୍ଟର (District Inspector of schools) । ତାଙ୍କ ଘର ବଡ଼ମ୍ବାରେ । ଆଚାର୍ଯ୍ୟଙ୍କ ସହିତ ତାଙ୍କର ବିଶେଷ ଆତ୍ମୀୟତା ଥିଲା । ୯୦ ବର୍ଷ ବୟସରେ ଆଚାର୍ଯ୍ୟ ନିଜେ ପଟ୍ଟନାୟକଙ୍କୁ ରୋଗ ଶଯ୍ୟାରେ ସଂଖୁଳିବ କୁ ଯାଇଥିଲେ । ସେତେବେଳକୁ ଆଚାର୍ଯ୍ୟ ପ୍ରାୟ ଅନ୍ଧ ହୋଇ ସାରିଲେଣି । ଆଖି ଦୁଇଟିକୁ କିଛୁ ଦେଖାଯାଉ ନ ଥାଏ । ସେ ଯାଇଥିଲେ ତାଙ୍କର ଅନୁରକ୍ତ ସେବକ ଶ୍ରୀ ସଚ୍ଚିଦାନନ୍ଦ ମହାନ୍ତିଙ୍କ ସଙ୍ଗରେ । କଟକରେ ଲୋକନାଥବାବୁ ହରିହର ମହାପାତ୍ରଙ୍କର ପିତା କାଶୀନାଥ ମହାପାତ୍ରଙ୍କୁ ଘରର ପଡ଼ା କଥା ପଚାରିଲେ । ମେସ କଥା ମଧ୍ୟ ପଚାରିଲେ । ହରି କହିକହି କହିଦେଲା, 'ଆମ ମେସରେ ଯେଉଁ ଡ଼ାଲି ହୁଏ, ସେଥିରେ ବୁଡ଼ମାରିଲେ ମଧ୍ୟ ଡ଼ାଲି ଫାଲେ ମିଳିବ ନାହିଁ ।' ଏକଥା ଶୁଣି ସମସ୍ତେ ଠୋ ଠୋ ହୋଇ ହସି ଉଠିଲେ । ଏ ବିଷୟଟି ଲୋକନାଥ ବାବୁ କେତେବେଳେ ଆଚାର୍ଯ୍ୟ ମହାଶୟଙ୍କୁ କହି ଦେଇଥାନ୍ତି । ସବୁ ଶିକ୍ଷକମାନେ ଶୁଣିଲେ । କିନ୍ତୁ ହରିବାବୁ ଏଥିପାଇଁ ତାଙ୍କୁ ମୋଟେ ଗାଳି ଦେଲେ ନାହିଁ ।

ସେ ନିଜେ ଏ ସମ୍ପର୍କରେ ଲେଖିଛନ୍ତି, 'ତାଙ୍କର ଇଙ୍ଗିତ ସ୍ନେହ-ସ୍ନିଗ୍ଧ, ଗୃହବର୍ଜ୍ଜିତ, ମାନିଲେ ତମର ଭଲ ନ ଶୁଣିଲେ ତାଙ୍କର ବିକାର ନାହିଁ । ଏହି ବୈଶିଷ୍ଟ୍ୟ ଅନନ୍ୟ ସାଧାରଣ; ସେଥିଯୋଗୁ ପରବର୍ତ୍ତୀ କାଳର 'ଆଚାର୍ଯ୍ୟ ହରିହର' ସାମାଜିକ ସ୍ତରରେ, ରାଜନୀତି କ୍ଷେତ୍ରରେ ସର୍ବଜନ ପୂଜିତ । ମତଭେଦର ତିକ୍ତତା, ଦୃଷ୍ଟିକୋଣର ଭିନ୍ନତା, କର୍ମଧାରାର ପାର୍ଥକ୍ୟ, କୁଳବିତ୍ତର ଅହଙ୍କାର, କ୍ଷମତାର ଆସ୍ଫାଳନ, ତାଙ୍କର ଶୁଚିମନ୍ତ ଜୀବନରେ କେତେବେଳେ କୌଣସି ଦ୍ୱନ୍ଦ୍ୱ ଉଠାଇ ପାରିନାହିଁ ।

ଅବିଚଳିତ ଚିତ୍ତର ଅନ୍ତରାଳରେ ସେ ରଖିଛନ୍ତି ସମସ୍ତଙ୍କ ପାଇଁ ଅକୁଣ୍ଠ ସ୍ନେହର ଉତ୍ସ ।

୧୯୭୦ ମସିହା ଫେବୃୟାରୀ ମାସର ୨ ତାରିଖ ଦିନ ଆଚାର୍ଯ୍ୟ ଭୂଦାନବାର୍ତ୍ତା ପ୍ରଚାର କରିବା ନିମନ୍ତେ ଅନୁଗୁଳର ମୌଳିକ ଟ୍ରେନିଂ କଲେଜର ଫାଟକ ନିକଟରେ ଆସି ପହଞ୍ଚିଲେ । ତାହାଙ୍କୁ ଛାତ୍ରମାନେ ଆନନ୍ଦରେ ଅଭ୍ୟର୍ଥନା କରି ସ୍କୁଲ ଭିତରକୁ ନେଇଗଲେ । ସେଠାରେ ବସି ପିଲମାନଙ୍କ ପ୍ରଶ୍ନର ଉତ୍ତର ସେ ନିଜେ ଆନନ୍ଦରେ ଗଦ୍ ଗଦ୍ ହୋଇ ଦେଇଥିଲେ, 'ତୁମେମାନେ ସତ୍ୟବାଦୀ ବିଦ୍ୟାଳୟର ଅଭିଜ୍ଞତା ସମ୍ବନ୍ଧରେ ମୋତେ ପଚାରୁଛ ?

'ସେ ଅଭିଜ୍ଞତା ବଡ଼ ମଧୁର ଓ ରୋମାଞ୍ଚ କର । ମୁଁ ସେଠାକାର ଛାତ୍ରାବାସର ଦାୟିତ୍ୱରେ ଥିଲି । ଛାତ୍ରାବାସରେ ରହିବାକୁ ଛାତ୍ରମାନେ ଏତେ ଭଲ ପାଆନ୍ତି ଯେ, ଛୁଟିରେ ଘରକୁ ଯିବାକୁ ଆଦୌ ମଙ୍ଗନ୍ତି ନାହିଁ । କୌଣସି ପ୍ରକାରର ବିଦ୍ୱେଷ ପୋଷଣ ନ କରି ସମସ୍ତେ ମିଳିମିଶି ଚଳନ୍ତି । ସମ୍ପୂର୍ଣ୍ଣ ହୃଦୟଭରି ଭଲ ପାଇବାର ଚିହ୍ନ ପ୍ରତି କ୍ଷେତ୍ରରେ ଉକୁଟିଉଠେ । ଥରେ ବୈକୁଣ୍ଠକୁ ଜ୍ୱର ହେଲା—ତମର କବି ବୈକୁଣ୍ଠ ପଟ୍ଟନାୟକକୁ । ତା'ର ଘରଲୋକ ଆସିଲେ ଘେନିଯିବା ପାଇଁ । କିନ୍ତୁ ସେ ଜିଦ୍ କରି ଘରକୁ ଗଲା ନାହିଁ । ଆଉ ଥରେ ଗୋଟିଏ ଛାତ୍ର ଘରକୁ ଯାଇଥିଲା । ସେଠାରେ ଜ୍ୱର ହେବାରୁ, ଗୋଟିଏ ଦିନମାତ୍ର ଘରେ ରହି ସେହି ଜ୍ୱର ଜର୍ଜରିତ ଦେହରେ ଛାତ୍ରାବାସକୁ ବାହୁଡ଼ି ଆସିଲା । ସତ୍ୟବାଦୀ କଥା ଚିନ୍ତାକଲେ ଏହିପରି କେତେକେତେ ଭୟଙ୍କର ସୁନ୍ଦର ଅଭିଜ୍ଞତା ମନ ମଧ୍ୟରେ ଉଙ୍କିମାରେ ।'

ପ୍ରଚଳିତ ଶିକ୍ଷା ପଦ୍ଧତି ସମ୍ବନ୍ଧରେ ଆଚାର୍ଯ୍ୟଙ୍କର ଅଭିନବ ଚିନ୍ତାଧାରା ପ୍ରକଟିତ ହୋଇଅଛି । ଯେ ଯେତେବେଳେ ତାଙ୍କୁ ପଚାରନ୍ତି ଏହି ଶିକ୍ଷାପଦ୍ଧତିର ବର୍ତ୍ତମାନ ଓ ଭବିଷ୍ୟତ କ'ଣ ? ସେ ତାଙ୍କୁ ଏହିପରି ଭାବରେ ଉତ୍ତର ଦେଇଅଛନ୍ତି—

'ଆମର ପ୍ରଚଳିତ ବିଶ୍ୱବିଦ୍ୟାଳୟ ଶିକ୍ଷାର ଆବଶ୍ୟକତା ନାହିଁ । ଦେଶର ସବୁ ବିଶ୍ୱବିଦ୍ୟାଳୟ କୋଡ଼ି, କାଙ୍କର ବିଶ୍ୱବିଦ୍ୟାଳୟ ହେବା ଆବଶ୍ୟକ । ଏଇଥିରୁ ଶିକ୍ଷା ସଂପର୍କରେ ସେ କେତେ ଚିନ୍ତା କରୁଥିଲେ ଓ ପ୍ରଚଳିତ ଶିକ୍ଷାର ଭବିଷ୍ୟତ ନେଇ କେତେ ସେ ବ୍ୟସ୍ତ ଥିଲେ ତାହା ଅନୁମାନ କରିହେବ । ଦିନକର ଘଟଣା, ଜଣେ ବିଶିଷ୍ଟ ଶିକ୍ଷାବିତ୍ ଲେଖିଛନ୍ତି, 'ସେତେବେଳେ ଭାରତ ସେବକ ସମାଜର ଅର୍ଗାନାଇଜର ରୂପେ ମୁଁ କାର୍ଯ୍ୟ କରୁଥାଏ ।

ଗୋଟିଏ 'ହଲିଡ଼େ ହୋମ୍ କ୍ୟାମ୍ପ' ରେ ଥିବା ସତୁରି ଜଣ ଛାତ୍ର ଛାତ୍ରୀଙ୍କୁ ନେଇ ଆଚାର୍ଯ୍ୟ ହରିହରଙ୍କ ଆଶୀର୍ବାଦ ପାଇବା ପାଇଁ ଗଲି । ସେତେବେଳେ ଆଚାର୍ଯ୍ୟ ମହାଶୟ ପୁରୀ ଗୋପବନ୍ଧୁ ଭବନରେ ଅବସ୍ଥାନ କରୁଥାନ୍ତି । ବିଶିଷ୍ଟ ସମାଜସେବୀ ଶ୍ରୀଯୁକ୍ତ ସଚ୍ଚିବାବୁ ତାଙ୍କର ତଦାରଖ କରୁଥିଲେ । ପିଲାମାନଙ୍କୁ ନେଇ ତାଙ୍କ ପାଖେ ପହଞ୍ଚି ପ୍ରଣାମ କଲୁ । ତା'ପରେ ସେ ଆଶୀର୍ବାଦ ଦେବାକୁ ଯାଇ କହିଲେ, 'ପିଲାମାନେ ତୁମେସବୁ ଭବିଷ୍ୟତରେ କ'ଣ ହେବ ଓ କ'ଣ କରିବ ସେଥିପାଇଁ ମୁଁ ବିଶେଷ ଚିନ୍ତିତ । ଆଜି ଶିକ୍ଷା କ୍ଷେତ୍ର ଯାହା ହୋଇଛି ଭାବିଲା ବେଳକୁ ମର୍ମାହତ ହେବାକୁ ହୁଏ । ତୁମ୍ଭମାନଙ୍କ ଉପରେ ଯେଉଁ ଶିକ୍ଷା ଲଦି ଦିଆଯାଉଛି ତା'ର ପରିଣାମ ଭଲ ହେବ ବୋଲି ମନେ ହେଉ ନାହିଁ । ( ଏ କଥା କହିଲାବେଳେ ଆଚାର୍ଯ୍ୟ ମହାଶୟଙ୍କ ଆଖି ଛଳ ଛଳ ହୋଇ-ପଡ଼ିଥିଲା ) ଗାନ୍ଧିଜୀଙ୍କ କଥା ଓ ଶିକ୍ଷା ମାତ୍ର କେହି ମାନିଲେ ନାହିଁ । ଶିକ୍ଷା ମଣିଷକୁ ମଣିଷପରି ଗଢ଼ିବାର କଥା, ତା' ତ ଏ ପର୍ଯ୍ୟନ୍ତ ହେଲାନାହିଁ । ସେଇ ସବୁ ବିଶ୍ୱବିଦ୍ୟାଳୟ କୋଡ଼ି, କାଙ୍କର ବିଶ୍ୱବିଦ୍ୟାଳୟ ହେଉ । ସେ କଥା କାହା ମୁଣ୍ଡରେ ପଶୁନି । ଗୁରୁଜୀମାନଙ୍କ ସଙ୍ଗେ ଛାତ୍ର ଛାତ୍ରୀଙ୍କର ଉତ୍ତମ ସମ୍ପର୍କ ରହିପାରୁ ନାହିଁ । ଏ ସବୁ ଦିଗରେ ନଜର ଦେଇ ଭଲ ମଣିଷ ହେବାପାଇଁ ପିଲାମାନେ ଚେଷ୍ଟା କରିବ । ଜଗନ୍ନାଥ ତୁମମାନଙ୍କର ମଙ୍ଗଳ କରନ୍ତୁ । ତମେ ସବୁ ଭବିଷ୍ୟତରେ ଭଲ ମଣିଷ ହୋଇ ତମ ଗାଁ ମାନଙ୍କର ଉନ୍ନତି କର, ଏହା ହିଁ ପ୍ରଭୁଙ୍କଠାରେ ମୋର କାମନା ।

୧୯୪୫ ମସିହା ବେଳକୁ ତାଙ୍କର ଦୃଷ୍ଟିଶକ୍ତି କମିଆସିଲା । ୧୯୫୫ ରେ ତାଙ୍କୁ ସବୁ ଅନ୍ଧକାରମୟ ଦେଖାଗଲା । ସେତେବେଳେ ପୁରୀରେ ନିଖିଳ ଭାରତ ସର୍ବୋଦୟ ସମ୍ମିଳନୀ ହେଉଥାଏ । ଶଙ୍କର ମିଶ୍ର ନାନା କାର୍ଯ୍ୟରେ ବ୍ୟସ୍ତଥାଇ ଆଗୁର୍ଯ୍ୟଙ୍କୁ ବୁଲାଚଲା କରାଉଥାନ୍ତି । ତାଙ୍କୁ ଜଣେ କିଏ ସାହାଯ୍ୟ ନ କଲେ ନ ଚଳେ । ସେହି ଦୃଷ୍ଟିହୀନ ଅବସ୍ଥାରେ ସେ ଗୋପବନ୍ଧୁ ଚୌଧୁରୀଙ୍କ ମୃତ୍ୟୁ ପରେ ଓଡ଼ିଶାରେ ଭୂଦାନ ଯଜ୍ଞର ନେତୃତ୍ୱ ନେଲେ । ଏହି ଦିନଠାରୁ ଓଡ଼ିଶାରେ ସେ ପଦଯାତ୍ରା ଆରମ୍ଭ କରିଦେଲେ । ଏ ସମ୍ପର୍କରେ ଶ୍ରୀ ବିନୋଦ କାନୁନ୍‌ଗୋ ଉଲ୍ଲେଖ କରିଅଛନ୍ତି, 'ଗୋପବନ୍ଧୁ ବାବୁ ଯେଉଁ ଭୂଦାନ ଆନ୍ଦୋଳନର ଓଡ଼ିଶାରେ ଅଗ୍ରଣୀ ଥିଲେ, ତାକୁ ଆଗେଇନେବା ଦାୟିତ୍ୱ ତାଙ୍କର ଉପରେ ପଡ଼ୁଛି ବୋଲି ସେ ବିଚାରିଲେ ଆଖି ଆଉ ତାଙ୍କ ସହିତ ସହଯୋଗ କରୁ ନ ଥିଲେ ମଧ୍ୟ ଗୋଡ଼ ଦୁଇଟି ତ ଚାଲୁଛି ! ଓଡ଼ିଶାରେ ପଦ ଯାତ୍ରା କରିବେ । କାହାର ମନା ମାନିଲେ ନାହିଁ । ଉତ୍ତର ବାଲେଶ୍ୱର ସୀମାନ୍ତରୁ ସେହି ବର୍ଷ ଅଗଷ୍ଟ ୧୫ ତାରିଖ ସ୍ୱାଧୀନତାଦିବସରେ ଆରମ୍ଭ କଲେ ପଦଯାତ୍ରା । ଖରା, ବର୍ଷା, ଶୀତ ନ ମାନି ୧୯୬୦ ପର୍ଯ୍ୟନ୍ତ ପ୍ରାୟ ତିନିହଜାର ମାଇଲ ସେ ବୁଲିଥିଲେ । ସେ ଯାତ୍ରାବେଳେ ତାଙ୍କୁ ଯିଏ ଦେଖିଛି, ସେ ବିସ୍ମିତ ହୋଇଛି । ମନର ବଳ ପାଖରେ ଶରୀରର ଦୁର୍ବଳତା କିପରି ସଂପୂର୍ଣ୍ଣ ପରାଜୟ ସ୍ୱୀକାର କରେ ତାହାର ପ୍ରମାଣ ଦେଇ ଦେଇ ସତେ ଯେପରି କି ସେ ଚାଲିଥାନ୍ତି ।'

୧୯୬୦ରେ ଓ୍ୱାର୍ଦ୍ଧାଠାରେ ନିଖିଳ ଭାରତ ସର୍ବୋଦୟ ସମ୍ମିଳନୀରେ ସଭାପତି ହେବାର କଥା ଥାଏ । ସେଥିପାଇଁ ତାଙ୍କୁ ଭୂଦାନ ପଦଯାତ୍ରା ବନ୍ଦ କରିବାକୁ ପଡ଼ିଲା । ସେତେବେଳକୁ ତାଙ୍କର ବୟସ ପ୍ରାୟ ୮୦ ବର୍ଷ । ତାଙ୍କର ସାଙ୍ଗ, ସାଥୀ ଓ ସହକର୍ମୀ ମାନେ ବୁଝାଇଲେ, 'ଆପଣଙ୍କର ଶକ୍ତି କମିଗଲାଣି । ଆପଣ କୌଣସି କାମ ନ କରି ଗୋଟିଏ ଜାଗାରେ ବସିଯାନ୍ତୁ । ଆପଣଙ୍କର ତ ସୂତା କାଟିବାର ଅଭ୍ୟାସ ଅଛି, ସେଇତକ ବସି ହେଲେ କରନ୍ତୁ ।' ଆଗୁର୍ଯ୍ୟେ ସେମାନଙ୍କର କଥା ଶୁଣି କହିଲେ, 'ଦେହରେ ତ ସାମାନ୍ୟ ବଳ ଓ ଶକ୍ତି ଅଛି, କାମ ନ କରି

ବସିବ କପିଁତ ? ଗୀତାରେ ତ ଭଗବାନ କହି ଅଛନ୍ତି, 'କୌଣସି ଲୋକ ଦଣ୍ଡେ ସୁଦ୍ଧା କାମ ନ କରି ରହିପାରିବ ନାହିଁ ।'

ସର୍ବୋଦୟ ସମ୍ମିଳନୀରେ ସଭାପତିର ଅଭିଭାଷଣରେ ଆଚାର୍ଯ୍ୟ ଯାହା କହିଲେ, ତାହାର ସାରମର୍ମ ହେଉଛି, ଭାଇ ଓ ଭଉଣୀମାନେ, ଆପଣମାନେ ସମସ୍ତେ ମନପ୍ରାଣ ଦେଇ ସର୍ବୋଦୟ କର୍ମରେ ନିଜ ନିଜକୁ ନିୟୋଜିତ କରନ୍ତୁ । ଏହି ଆନ୍ଦୋଳନରେ କୌଣସି ରାଜନୈତିକ ଗନ୍ଧ ନାହିଁ । ଏହି ଆନ୍ଦୋଳନ ନିର୍ମଳ, ନିର୍ଦ୍ଦୋଷ ଓ ବିଶୁଦ୍ଧ । ଏଥିରେ କେବଳ ଅଛି, ସମାଜର ନିମ୍ନ ସ୍ତରରେ ଥିବା ଲୋକମାନଙ୍କର ସାମ୍ୟ, ମୈତ୍ରୀ, ସ୍ନେହ ଓ ସଦ୍‌ଭାବ । କିଣ କଲେ ନିଜେ ବଞ୍ଚିରହିବ ଏବଂ ପରର ମଙ୍ଗଳ ସାଧନ କରିପାରିବ ଏହି ଚିନ୍ତାକୁ କିପରି ଆଗେଇ ନେବାକୁ ହେବ, ସେଥିପ୍ରତି ଆପଣମାନେ ଦୃଷ୍ଟି ଦିଅନ୍ତୁ । ପ୍ରତିଦିନ ସକାଳୁ ଉଠି ଭଗବାନଙ୍କଠାରେ ପ୍ରାର୍ଥନା କରନ୍ତୁ—

'ସମସ୍ତେ ସୁଖୀ ହୁଅନ୍ତୁ, ରୋଗ ବ୍ୟାଧିରୁ ମୁକ୍ତ ହୁଅନ୍ତୁ । ସମସ୍ତେ ଦୀର୍ଘଜୀବୀ ହୁଅନ୍ତୁ । ଦେଶ ଓ ଦଶର ମଙ୍ଗଳ କରନ୍ତୁ ।'

ଏହି ଦେଖନ୍ତୁ ଆପଣମାନଙ୍କ ନିମନ୍ତେ ମହାତ୍ମା ଗାନ୍ଧି ଓ ଋଷିପ୍ରତିମ ବିନୋବାବାଭେ କିପରି ଅସାଧ୍ୟ ସାଧନ କରୁଅଛନ୍ତି । 'ଭୂମିହୀନ ଲୋକ-ମାନଙ୍କୁ ଭୂମି ଦେବା ଓ ଗ୍ରାମବାସୀମାନଙ୍କୁ ଏକତ୍ରିତ କରି ସେମାନଙ୍କୁ ନାନାରକମର ଫସଲ ଉତ୍ପାଦନ କରିବାକୁ ଶିକ୍ଷାଦେବା ଭୂଦାନ ଯଜ୍ଞର ପ୍ରଥମ ସୋପାନ । କିନ୍ତୁ ସର୍ବ ପ୍ରଥମେ ଆପଣମାନଙ୍କୁ 'ଭଲ ମଣିଷ' ହେବାକୁ ପଡ଼ିବ । ଏଥିପାଇଁ ସମସ୍ତେ 'ସହନଶୀଳ ହେବା' ଏହା କହି ସଭାପତି ଆଚାର୍ଯ୍ୟ ହରିହର ଦାଶ ନିଜର ଆସନ ଗ୍ରହଣ କଲେ ।

୧୯୬୦ ଏପ୍ରିଲ୍ ୨୯ ତାରିଖ । ସେହିଦିନ ଗୋପବନ୍ଧୁ ଚୌଧୁରୀଙ୍କର ଦ୍ୱିତୀୟ ଶ୍ରାଦ୍ଧ ଦିବସ । ସର୍ବୋଦୟର ବାର୍ତ୍ତା ଗ୍ରାମେ ଗ୍ରାମେ ପ୍ରଚାର କରିବା ଉଦ୍ଦେଶ୍ୟରେ ମୟୂରଭଞ୍ଜରୁ ଆଚାର୍ଯ୍ୟ ବାହାରିଲେ । କୋରାପୁଟ୍‌ରେ ପହଞ୍ଚିଲା ବେଳକୁ ସେ ଖୁବ୍ ପ୍ରବଳ ଜ୍ୱରରେ ଆକ୍ରାନ୍ତ ହୋଇପଡ଼ିଲେ । ପଦଯାତ୍ରା

ବନ୍ଦହେଲା । ଆଗ୍ନେୟୋ ପୁଣି ଫେରି ଆସିବାକୁ ବାଧ ହେଲେ । ସ୍ଥିରହେଲା, ଜ୍ୱର ଭଲହୋଇଗଲେ ପୁଣି ସର୍ବୋଦୟ ପଦଯାତ୍ରାରେ ବାହାରିବେ ।

୧୯୭୨ଠାରୁ ୧୯୭୮ ପର୍ଯ୍ୟନ୍ତ ସେ ପୁଣି ଗୋପବନ୍ଧୁ ଭବନରେ ରହିଲେ । ସ୍ୱାଧୀନତା ସଂଗ୍ରାମୀ ଓ ଲବଣ ସତ୍ୟାଗ୍ରହରେ ସକ୍ରିୟ ଅଂଶ ଗ୍ରହଣ କରିଥିବା ଶ୍ରୀ ସଚ୍ଚିଦାନନ୍ଦ ମହାନ୍ତି ତାଙ୍କ ପାଖେ ପାଖେ ରହି ତାଙ୍କର ସେବା ଓ ଶୁଶ୍ରୂଷା କଲେ । ମଝିରେ ମଝିରେ ଆଗ୍ନେୟୋ କର୍ମୀ-ମାନଙ୍କୁ ଉପଦେଶ ଓ ପ୍ରେରଣା ଦେବା ନିମନ୍ତେ ସୁନ୍ଦରଗଡ଼ ଓ କୋରାପୁଟ ପ୍ରଭୃତି ସ୍ଥାନକୁ ଯାଆନ୍ତି ।

ଡକ୍ଟର ଶ୍ରୀରାମଚନ୍ଦ୍ର ଦାଶ 'ଆଗ୍ନେୟ ସ୍ମରଣେ' ପ୍ରବନ୍ଧରେ ଲେଖି-ଅଛନ୍ତି, 'ସେ ୧୯୩୦ରେ ଲୁଣମରା ଆନ୍ଦୋଳନରେ ନେତୃତ୍ୱନେଇ ଜେଲ ଯାଇଥିଲେ । ଏବଂ କଂଗ୍ରେସ ବେଆଇନ୍ ହେବାପରେ ସେ ଓଡ଼ିଶା କଂଗ୍ରେସର ଡିକ୍ଟେଟର ନିଯୁକ୍ତ ହୋଇଥିଲେ । ଜେଲରୁ ଖଲାସ ହେବା ପରେ ୧୯୩୪ରେ ମହାତ୍ମା ଗାନ୍ଧୀଙ୍କ ହରିଜନ ପଦଯାତ୍ରା ବେଳେ ସେ କ୍ଷମତା, ରାଜନୀତି ଛାଡ଼ି ଗାନ୍ଧୀନୀତି ଅନୁସରଣ କରି ରଚନାତ୍ମକ କର୍ମରେ ନିଜକୁ ନିୟୋଜିତ କରିଥିଲେ । ଗାନ୍ଧିଜୀଙ୍କ ମହାପ୍ରୟାଣ ପରେ ସେ ବିନୋବାବାବେଙ୍କର ସହକର୍ମୀ ଭାବରେ ଭୂଦାନ କାର୍ଯ୍ୟରେ ନିଜକୁ ଲଗାଇ ଦେଲେ । ଭୂଦାନ କର୍ମୀଭାବରେ ତାଙ୍କର ଶେଷଜୀବନ କଟିଗଲା । ଆଗ୍ନେୟ ହରିହର ପାରିବାରିକ ଜୀବନଯାପନ କରି ନ ଥିଲେ । ସେ ତାଙ୍କ କନିଷ୍ଠ ଭ୍ରାତା ଡାକ୍ତର ଶ୍ରୀ ଶଙ୍କର ଦାଶଙ୍କ ପିଲାମାନଙ୍କୁ ନିଜ ପିଲାରୂପେ ଗ୍ରହଣକଲେ । କିନ୍ତୁ ସେ କାଳକ୍ରମେ ସମଗ୍ର ମାନବ ସମାଜକୁ ନିଜର ପରିବାର ରୂପେ ବିଚାରକରି ସମସ୍ତଙ୍କୁ କହିବାକୁ ଲାଗିଲେ, 'ଭଲ ମଣିଷ ହୁଅ ।'

ତାଙ୍କ ବିଷୟରେ ମୋର ଗୋଟିଏ ଅନୁଭୂତି ବର୍ଣ୍ଣନା କରି ମୁଁ ଏହି ଲେଖାର ଉପସଂହାର କରିବି । ୧୯୫୦ ମସିହାରେ ପୁରୀରେ ନବକଳେବର ହେଉଥାଏ । ସେତେବେଳେ କେତେଜଣ ସାଧୁ ସାମାନ୍ୟ ଗଣ୍ଡଗୋଳ କଲେ ବୋଲି ପୁଲିସ ସାଧୁମାନଙ୍କୁ ପ୍ରବଳ ମାଡ଼ଦେଲା ।

କେତେକ ସାଧୁ ମରିଗଲେ ବୋଲି ଖବର ରଟିଗଲା । ଘଟଣାରେ ମନ୍ତ୍ରୀ ଶ୍ରୀଯୁକ୍ତ ନିତ୍ୟାନନ୍ଦ କାନୁନ୍‌ଗୋ ସେଠାରେ ଉପସ୍ଥିତ ଥାଆନ୍ତି । ସେତେ-ବେଳକୁ ଆଚାର୍ଯ୍ୟଙ୍କ ଆଖି ଖରାପ ହେଲାଣି । ବଡ଼ ଶଙ୍ଖ ପାଟରୁ ଟିକିଏ ଦୂରରେ ସେ ବୁଲୁଥିଲେ । ମୁଁ ତାଙ୍କ ପାଖରେ ଥିଲି । ସେ ସେତେବେଳେ ଗେରୁଆ ଲୁଗା ପିନ୍ଧିଥାଆନ୍ତି ଓ ତାଙ୍କର ଦାଢ଼ି ଥିଲା । ବାଡ଼ ଖଣ୍ଡିଏ ବି ହାତରେ ଥାଏ । ସାଧୁମାନେ ଏଣେତେଣେ ଦୌଡ଼ିବାରୁ ପୁଲିସ ସେମାନଙ୍କୁ ଗୋଡ଼େଇ ଗୋଡ଼େଇ ପିଟିଲେ । ହଠାତ୍ ଦୁଇଜଣ କନେଷ୍ଟବଲ୍ ଆଚାର୍ଯ୍ୟ ହରିହରଙ୍କୁ ସାଧୁ ଭାବି ଠେଙ୍ଗା ଉଞ୍ଚାଇବାରୁ ମୁଁ ଚିତ୍କାର କରିଉଠିଲି, 'ହାଁ, ହାଁ । ସେ ସାଧୁ ନୁହନ୍ତି, ସେ ଆଚାର୍ଯ୍ୟ ହରିହର । ତଥାପି ଗୋଟିଏ ପାହାର ବସିଗଲା ଓ ତାଙ୍କ ଗୁଦର ଯୋଗୁଁ ପାହାରଟି କାନ୍ଧରୁ ଖସିଗଲା । ପାହାର ସତ୍ତ୍ୱେ ଆଚାର୍ଯ୍ୟ ହରିହର ଫେଁ କିନା ହସିଦେଲେ । ତାହା ହିଁ ଆଚାର୍ଯ୍ୟ ହରିହର । ନିତ୍ୟାନନ୍ଦ ବାବୁଙ୍କୁ ଏ ଖବର ଦିଆଯିବା ମାତ୍ରେ ସେ ଦୌଡ଼ି ଆସି ଦୋଷ ସ୍ୱୀକାର କଲେ ସିନା, କିନ୍ତୁ ଆଚାର୍ଯ୍ୟଙ୍କ ପାଖରେ କୌଣସି ବିରକ୍ତି ନ ଥିଲା ।'

ଆଉ ଗୋଟିଏ ଘଟଣା ଏଠାରେ ଉଲ୍ଲେଖ କରାଯିବ । ଆଚାର୍ଯ୍ୟ ମହାଶୟଙ୍କର ଅନେକ ସ୍ନେହ ଏବଂ ବନ୍ଧୁ କର୍ମୀ ଅଛନ୍ତି । ଏମାନେ କର୍ମ କ୍ଷେତ୍ରରେ ଆଚାର୍ଯ୍ୟଙ୍କ ସଂସ୍ପର୍ଶରେ ଆସି ଜୀବନରେ ଯେଉଁ ଅଭିଜ୍ଞତା ଅର୍ଜ୍ଜନ କରିଥିଲେ ତାହା ଅମୂଲ୍ୟ । ଆଚାର୍ଯ୍ୟ ମହାଶୟଙ୍କର ମହନୀୟତା ଓ ଚରିତ୍ରବଳ ସେଥିରେ ପରିସ୍ଫୁଟ ହୋଇଅଛି ।

ସେତେ-ବଡ଼ ଶୀତ ହେଉ ପଛକେ ଆଚାର୍ଯ୍ୟ ମହାଶୟ ସକାଳ ୪ଟାରୁ ଉଠି ସ୍ନାନ, ପ୍ରାର୍ଥନା ଆଦି ସାରି ତାଙ୍କର ଦୈନନ୍ଦିନ କାର୍ଯ୍ୟ ଆରମ୍ଭ କରୁଥିଲେ । ତାଙ୍କ ଶିବିରର ସମସ୍ତେ ଏହି ଶୃଙ୍ଖଳା ମାନି ଚଳୁଥିଲେ । ସେ ପାନ ଖାଉ ନ ଥିଲେ । ପାନ ପରିବର୍ତ୍ତରେ ସମୟେ ସମୟେ ଅମପତ୍ର ଗୁଣ୍ଡ ପାଟିରେ ପକାଇ ଚୋବାଉଥାଆନ୍ତି । ନିଜର କାର୍ଯ୍ୟକେନ୍ଦ୍ରରେ ସମସ୍ତେ କାର୍ଯ୍ୟରତ, କାହାକୁ ପାନ ଆଣିବାକୁ ପଠାଇବେ ? କୋରାପୁଟ ସହର କଥା । ସେଠାରେ ଥିଲାବେଳେ କେତେକ ଗାଁ ଲୋକ ଆସି ତାଙ୍କୁ ଗାନ୍ଧିବାପା ମନେକରି ଭକ୍ତିରେ ବିଭୋର ହୋଇ ନମସ୍କାର କଲେ । କିନ୍ତୁ ତାଙ୍କ

ପାଖରେ ପଡ଼ିଥିବା ଆସନରେ ବସିଲେ ନାହିଁ । ଆଚାର୍ଯ୍ୟ ମହାଶୟ ସେମାନଙ୍କୁ କହିଲେ, 'ଆସ, ମୋ ପାଖରେ ବସ । ସେମାନେ କହିଲେ, 'ଆପଣ ଜଣେ ସନ୍ନ୍ୟାସୀପରି ଲୋକ । ଆପଣଙ୍କ ସଙ୍ଗେ ବସିବାକୁ ଆମେ ଭଜନ ନୋହୁଁ ।' ଏତିକ କହି ସେମାନଙ୍କ ମଧ୍ୟରୁ ଜଣେ କର୍ମୀଙ୍କ ହାତରେ ଆଚାର୍ଯ୍ୟଙ୍କ ପାଇଁ ଦିଖଣ୍ଡ ପାନ ଦେଇ ଚାଲିଗଲେ । କର୍ମୀ ଜଣକ ପାନ ଦୁଇଖଣ୍ଡ ଆଚାର୍ଯ୍ୟଙ୍କୁ ଦେଇ କହିଲେ, 'ସେମାନେ ଆପଣଙ୍କ ପାଇଁ ଏହି ଦୁଇଖଣ୍ଡି ପାନ ଦେଇଯାଇଛନ୍ତି । ଆଚାର୍ଯ୍ୟ ମହାଶୟ କହିଲେ, 'ତୁ ଏ ପାନ କ'ଣ ସେମାନଙ୍କୁ ମାଗିଲୁ କି ?' କର୍ମୀ ଜଣକ ନାହିଁ କରିବାରୁ ଗୋପ ଚୌଧୁରୀ ଓ ଆଚାର୍ଯ୍ୟେ ଉଭୟେ ଠୋ ଠୋ ହସି ଉଠିଲେ । ଶହ ଶହ ଘଟଣା ଆଚାର୍ଯ୍ୟଙ୍କ ସମ୍ବନ୍ଧରେ ଖୋଜି ବସିଲେ ଗୋଟିଏ ବିରାଟ ଗ୍ରନ୍ଥ ହେବ । ସେହି ଘଟଣାମାନଙ୍କ ମଧ୍ୟରୁ ଦୁଇଟି କେବଳ ପାଠକମାନଙ୍କର ଅବଗତି ନିମନ୍ତେ ଦିଆଗଲା ।

ଶ୍ରୀ ଗୋକୁଳାନନ୍ଦ ମହାନ୍ତି 'ସଂପର୍କରେ ଆସିଲେ ଭକ୍ତି ବଢ଼ିବ' ପ୍ରବନ୍ଧରେ ଲେଖିଅଛନ୍ତି, 'ଊଣେଇଶ ତିରିଶ ମସିହା ଲବଣ ସତ୍ୟାଗ୍ରହୀଙ୍କ ପ୍ରଥମ ଦଳରେ ସେ ଥିଲେ । ମୁଁ ଓ ଅନ୍ୟ ୧୪ । ୧୫ ଜଣ ସତ୍ୟାଗ୍ରହୀ ତାଙ୍କ ସଙ୍ଗେ ଥିଲୁଁ । ବାହାରିବା ବେଳେ ଦଳର ନେତା ଥିଲେ ଗୋପବାବୁ । ସେ ବାଟରେ ଗିରଫ ହେବାରୁ ଆଚାର୍ଯ୍ୟ ମହାଶୟ ଅଗ୍ରଗାମୀ ହେଲେ । ବାଲେଶ୍ୱରରେ ପହଞ୍ଚିଲୁ । ତା'ପରେ ସମୁଦ୍ରକୂଳ ଶିବିରକୁ ଗଲୁ । ପରଦିନ ସକାଳୁ ଚାରିଜଣ ସତ୍ୟାଗ୍ରହୀଙ୍କୁ ଧରି ଆଚାର୍ଯ୍ୟ ମହାଶୟ ସମୁଦ୍ର ଉପକୂଳକୁ ବାହାରିଗଲେ । ସେଠାରେ ଲୁଣମାଟି ତୋଳି ଗଦେଇବାରେ ଆମ୍ଭେମାନେ ଲାଗିଗଲୁ । ହଠାତ୍ ଆମ ଭିତରୁ ଜଣେ କିଏ କହିଲା— ପୁଲିସ ଆସିଲେଣି, ମୁଁ ଅନେଇଁ ଦେଲି । ମନେ ଅଛି, ଦେଖିଲି ପାଞ୍ଚ ହାତ, ପିତଳ ବେଣ୍ଟ ଠେଙ୍ଗା ଗୋଟିଏ ଗୋଟିଏ କାନ୍ଧରେ ପକାଇ ଜଣେ ପୁଲିସ ଅଫିସରଙ୍କ ନେତୃତ୍ୱରେ ଦଶ ଜଣ ସିପାହୀ ଆସୁଛନ୍ତି ।

ସେମାନେ ଆମ ସନ୍ନିକଟରେ ପହଞ୍ଚିବାକୁ ପ୍ରାୟ ୫ ମିନଟ୍ ଲାଗିଲା । ମରଣ ପାଇଁ ପ୍ରସ୍ତୁତ ରହିବାକୁ ଆମ୍ଭେମାନେ ପ୍ରତିଜ୍ଞା ପତ୍ରରେ

ସିନା ଦସ୍ତଖତ କରିଥିଲୁ , ସରକାର ସତ ମରିବାକୁ ପଡ଼ିବ, ଏ କଥା ଆଖି ଆଗରେ ନାଚିଗଲା । ଆମ ସମସ୍ତଙ୍କ ଖୁସି ଗପ ଏ ପାଞ୍ଚ ମିନିଟ୍ ବନ୍ଦ ହୋଇଗଲା । ସମସ୍ତେ ବୋଧହୁଏ ମାରବରେ ମରଣ ପାଇଁ ପ୍ରସ୍ତୁତ ହେବାକୁ ଲାଗିଗଲେ । ମୁଁ କିପରି ପ୍ରସ୍ତୁତ ନହେଲି ? କାହା କଥା କାହାରିକୁ ଜଣା ନାହିଁ । ଭାବଲି ଗଞ୍ଜାମୀ ଭାଷାରେ—'ଏଥର ସରିଗଲାରେ ପୁଅ ।' କିରସ ହସଟାଏ ହସିଲି । ଲୁଣମାଟି ଗୋଟେଇବାରେ ମୁଁ ଜୋର ମନ-ଦେବା ସଙ୍ଗେ ସଙ୍ଗେ ପୁଲିସମାନେ ଆସି ଚଉଆଡ଼େ ଧାଡ଼ି ହୋଇ ଛିଡ଼ା ହୋଇଗଲେ । ପୁଲିସମାନେ ଆସି ପହଞ୍ଚିବା ସଙ୍ଗେ ସଙ୍ଗେ ଆଗ ଆମ କାମ ସାରିବେ ମୁଁ ଭାବିଥିଲି; କିନ୍ତୁ ଆଚାର୍ଯ୍ୟ ମହାଶୟଙ୍କ ସଙ୍ଗେ ସେମାନେ କଥା ଆରମ୍ଭ କଲେ—ଆପଣମାନେ କ'ଣ କରୁଛନ୍ତି ? ଏ ବେଆଇନ କାମ ଆପଣମାନେ ଜାଣନ୍ତି ?' ଆଚାର୍ଯ୍ୟ ମହାଶୟ କହିଲେ – ହଁ, ଭଲ ଭାବରେ ମୁଁ ଜାଣେ, ଏମାନେ ସମସ୍ତେ ମଧ୍ୟ ଜାଣନ୍ତି ।' ପୁଲିସ ଅଫିସର କହିଲେ, 'ଆପଣମାନଙ୍କୁ ଗିରଫଦାର କରାଗଲା ।' ଆଚାର୍ଯ୍ୟ ମହାଶୟ କ'ଣ ତା'ପରେ କହିଲେ, ମୁଁ ଶୁଣିପାରିଲି ନାହିଁ, ସେ ଫିରି ସହିତ ପୁଲିସ ଅଫିସରଙ୍କ ସଙ୍ଗେ କଥାବାର୍ତ୍ତା କରୁଥିଲେ । 'ଇନ୍‌କିଲାବ୍ ଜିନ୍ଦାବାଦ୍ ହମ୍ ଲଡ଼େଙ୍ଗେ' ଧ୍ୱନିଦେଇ ଆମେ ବନ୍ଦୀଶାଳାକୁ ବାହାରିପଡ଼ିଲୁ । ପୁଲିସ ନୁହେଁ, ନେତୃତ୍ୱ ନେଲେ ଆଚାର୍ଯ୍ୟ ମହାଶୟ ।'

ଆଚାର୍ଯ୍ୟଙ୍କର ଏକନିଷ୍ଠ ସେବକ ଶ୍ରୀ ସଚ୍ଚିଦାନନ୍ଦ ମହାନ୍ତି ଓ ସର୍ବୋଦୟ କର୍ମୀ 'ଆଚାର୍ଯ୍ୟ ହରିହର' ପ୍ରବନ୍ଧରେ ଉଲ୍ଲେଖ କରିଅଛନ୍ତି । 'ଗୋପବନ୍ଧୁ ଚୌଧୁରୀଙ୍କ ମୃତ୍ୟୁପରେ ୧୯୫୮ ଅଗଷ୍ଟ ୧୫ ତାରିଖରେ ଆଚାର୍ଯ୍ୟ ମହାଶୟ ତାଙ୍କର ଐତିହାସିକ ପଦଯାତ୍ରା ବାଲେଶ୍ୱରରୁ ଆରମ୍ଭ କଲେ । ନିମନ୍ତ୍ର ପଦଯାତ୍ରା ଶେଷ ପର୍ଯ୍ୟାୟରେ ମୁଁ ୧୯୫୯ ଡିସେମ୍ବର ୧୫ ତାରିଖରେ ଝାରସୁଗୁଡ଼ାରେ ଆଚାର୍ଯ୍ୟ ମହାଶୟଙ୍କ ପଦଯାତ୍ରାରେ ଯୋଗଦେଲି । ସେହିଦିନଠାରୁ ୧୯୬୧ ଜାନୁୟାରୀ ଶେଷ ପର୍ଯ୍ୟନ୍ତ ପଦଯାତ୍ରା କରି ଆଚାର୍ଯ୍ୟ ମହାଶୟ କଟକ ଫେରିଲେ ଓ ଆମ୍ଭେମାନେ ପଣ୍ଡିତ କୃପାସିନ୍ଧୁ ହୋତାଙ୍କ ନେତୃତ୍ୱରେ ପଦଯାତ୍ରୀ ଦଳ ଓଡ଼ିଶା ବୁଲିଲୁ । ସେଠାରୁ ଆଚାର୍ଯ୍ୟ ମହାଶୟ ଆଗରୁ ଟ୍ରେନ୍‌ରେ ଯାଇ ପହଞ୍ଚିଥିଲେ ।

ସେଥର ସର୍ବୋଦୟ ସମ୍ମିଳନୀରେ ଆଚାର୍ଯ୍ୟ ମହାଶୟ ସଭାପତିତ୍ୱ କଲେ । ତାଙ୍କର ଅଭିଭାଷଣରେ ସେ କହିଥିଲେ, 'ସ୍ୱରାଜ୍ୟ' ମିଳିଛି ସତ କିନ୍ତୁ ତାହା ଏ ପର୍ଯ୍ୟନ୍ତ ଗାଁ ଗହଳର ଲୋକଙ୍କ ପାଖରେ ପହଞ୍ଚି ନାହିଁ । ଗଙ୍ଗାଙ୍କୁ ମୁନି ଚଳୁ କରି ପିଇଦେଲା ପରି ଶିକ୍ଷିତ ଧୋବ ଧଉଳିଆ ସହରର ଲୋକେ ସ୍ୱରାଜ୍ୟ ଗଙ୍ଗାଙ୍କୁ ଚଳୁ କରି ଦେଇଛନ୍ତି । ସେମାନେ ତାହା ଶୀଘ୍ର ଜନତାଙ୍କ ପାଖକୁ ବହିଯିବାପାଇଁ ଛାଡ଼ି-ଦିଅନ୍ତୁ, ନଚେତ୍ ପରିଣାମ ଭୟଙ୍କର ହେବ । ୧୯୬୦ ମସିହାରେ ଆଚାର୍ଯ୍ୟ ମହାଶୟଙ୍କର ଏହି କଥାର ମର୍ମ ଆଜି ଲୋକେ ଉପଲବ୍ଧି କରୁଛନ୍ତି । ୧୯୬୦ ମସିହା ଏପ୍ରିଲ୍ ୫ ତାରିଖରେ ଆଚାର୍ଯ୍ୟ ମହାଶୟ କଟକ ବଡ଼ ଡାକ୍ତରଖାନାରେ ଡାକ୍ତର ରାଜଗୁରୁଙ୍କ ଦ୍ୱାରା ତାଙ୍କର ଆଖି ଅପରେସନ୍ କରାଇଲେ । ମୋର ସୌଭାଗ୍ୟ ମୁଁ ତାଙ୍କର ସେବାରେ ରହିଲି । ଆଖି ପଟି ଖୋଲିବା ପରେ ଏପ୍ରିଲ୍ ୧୩ ତାରିଖରେ ଆଚାର୍ଯ୍ୟ ମହାଶୟ ଓ ମୁଁ ଗଲୁ ବ୍ରହ୍ମପୁର ପ୍ରାଦେଶିକ ସର୍ବୋଦୟ ସମ୍ମିଳନୀରେ ଯୋଗଦେବାକୁ । ସେଠାରୁ ଫେରି ଆଚାର୍ଯ୍ୟ ମହାଶୟ ଏପ୍ରିଲ୍ ୨୯ ତାରିଖରୁ ତାଙ୍କର ଦ୍ୱିତୀୟ ବାର ପଦଯାତ୍ରା ମୟୂରଭଞ୍ଜର ଝାଟିଅଡ଼ାରୁ ଆରମ୍ଭ କଲେ । ମୋର ସୌଭାଗ୍ୟ ମୁଁ ତାଙ୍କର ପଦଯାତ୍ରାରେ ରହିଲି । ପଦଯାତ୍ରାର ଅନୁଭୂତି ବର୍ଣ୍ଣନା କରି ବସିଲେ ତାହା ଏକ ବିରାଟ ଗ୍ରନ୍ଥ ହେବ । ଏହି ପଦଯାତ୍ରା ମୟୂରଭଞ୍ଜ, ବାଲେଶ୍ୱର, କଟକ, ଢେଙ୍କାନାଳ, କେନ୍ଦୁଝର ପୁଣି କଟକ, ପୁରୀ, ଗଞ୍ଜାମ ଜିଲ୍ଲାରେ ବୁଲିଲାପରେ ଆମ୍ଭେମାନେ କୋରାପୁଟ ଜିଲ୍ଲାରେ ୧୯୬୧ ମେ ମାସ ୧୪ ତାରିଖରେ ପ୍ରବେଶ କଲୁ । କୋରାପୁଟ ଜିଲ୍ଲାରେ ମାତ୍ର ୫ ଦିନ ବୁଲିଲାପରେ ଆଚାର୍ଯ୍ୟ ମହାଶୟଙ୍କୁ ପ୍ରବଳ ଜ୍ୱର ହେଲା । ତେଣୁ ସମସ୍ତେ ପଦଯାତ୍ରା ବନ୍ଦ କରିବାକୁ ବାଧ୍ୟ କଲେ । ଖିଲିଙ୍ଗିରାୟପୁରୁ ଗୁଡ଼ାରି ଆଚାର୍ଯ୍ୟ ମହାଶୟଙ୍କୁ ଗୋଟିଏ ଖଟିଆରେ ଶୁଆଇ କାନ୍ଧେଇ କରି ଆଣିଲେ ।

ସେଠାରୁ ମୋଟର ଯୋଗେ ରାୟଗଡ଼ା ଆସି କିଛି ଦିନ ବିଶ୍ରାମ ନେଇ ଆଚାର୍ଯ୍ୟ ମହାଶୟ କଟକ ଫେରିଲେ । ପୁଣି କଟକରୁ ପୁରୀକୁ ଯାଇ କିଛିଦିନ ବିଶ୍ରାମ ନେଲେ । ପୁରୀରେ ବିଶ୍ରାମ ନେବାଫଳରେ ଆଚାର୍ଯ୍ୟ

ମହାଶୟଙ୍କ ସ୍ୱାସ୍ଥ୍ୟ ଭଲ ରହିଲା ଏବଂ ସେ ପ୍ରତିଦିନ ୫ ମାଇଲ୍ ଚାଲିବାରେ ଅଭ୍ୟାସ ରଖିଲେ । ତାଙ୍କ ମନରେ ଆସିଲା, 'ମୋର ଆଖି ଯଦି ଭଲ ହୋଇଯାଏ, ତାହାହେଲେ ମୁଁ ପୁଣି ପଦଯାତ୍ରା କରିବି । ତେଣୁ ସେହି ୧୯୭୧ ମସିହା ଅକ୍ଟୋବର ୧୫ ତାରିଖ ଉପରଓଳ ଡାକ୍ତର ଦୁଃଖୈନ-ରାମ ଆଚାର୍ଯ୍ୟ ମହାଶୟଙ୍କ ବାମ ଆଖିର କାଟରାକ୍ଟ ଅପରେସନ୍ କଲେ । ତା' ପୂର୍ବରୁ ଫେବୃୟାରୀ ୧୫ ତାରିଖରେ ସେହି ଆଖିର ଗ୍ଲୋକମା ଅପରେସନ୍ ଡାକ୍ତର କୋପଲେ ସୋମପେଠା ଡାକ୍ତରଖାନାରେ କରିଥିଲେ । ୧୯୭୧ ମସିହାରେ ଆଚାର୍ଯ୍ୟ ମହାଶୟ କେତେଦିନ ଆହ୍ଲାବାଦରେ ରହିଥିଲେ । ମୁଁ ତାଙ୍କ ସଙ୍ଗରେ ଟଣ୍ଡନ୍‌ଜୀଙ୍କ ପାଖକୁ ୧୪ ତାରିଖ ନଭେମ୍ବରରେ ଦେଖାକରିବାକୁ ଯାଇଥିଲି । ଟଣ୍ଡନ୍‌ଜୀ ସେତେବେଳକୁ ପକ୍ଷାଘାତ ରୋଗରେ ଶଯ୍ୟାଶାୟୀ ହୋଇଥାନ୍ତି । ଅଣ୍ଟାଠାରୁ ନିମ୍ନକୁ ଚଳନ୍ତି ନ ଥାଏ ।

ଟଣ୍ଡନ୍‌ଜୀ ଆଚାର୍ଯ୍ୟ ମହାଶୟଙ୍କୁ ଦେଖିଲା ମାତ୍ରେ ହାତ ଦୁଇଟି ତାଙ୍କ ଆଡ଼କୁ ବଢ଼ାଇ ଦେଲେ । ଆଚାର୍ଯ୍ୟ ମହାଶୟ ତାଙ୍କ ହାତ ଧରି ପକାଇବାମାତ୍ରେ ଉଭୟଙ୍କ ଆଖି ଛଳ ଛଳ ହୋଇଗଲା । କଥା କହିଲା-ମାତ୍ରେ ଟଣ୍ଡନ୍‌ଜୀଙ୍କର ଦମ୍ ଉଠୁଥାଏ । ତଥାପି ସେ କଥାବାର୍ତ୍ତା ଆରମ୍ଭ କରିଦେଲେ । କହିଲେ, 'ଦୁଇଦିନ ତଳେ ମୁଁ ଖବର କାଗଜରୁ ଦେଖିଲି ଓଡ଼ିଶାର ଆଚାର୍ଯ୍ୟ ହରିହର ଦାଶ ଆହ୍ଲାବାଦ ଛାତ୍ର ୟୁନିୟନରେ ବକ୍ତୃତା ଦେବେ । ମୋର ସେ ଖବର ପଢ଼ି ମନେହେଲା, ଏ ହୁଏତ ସେ ଆଚାର୍ଯ୍ୟ ହରିହର ନୁହଁନ୍ତି; ଆଜି କଏ ବୋଧେ, ଆଚାର୍ଯ୍ୟ ହରିହର ଦାଶ ହେଲେଣି । ମୋ ପୁରୁଣା ବନ୍ଧୁ ଆଚାର୍ଯ୍ୟ ହରିହର ଦାଶ ହୋଇଥିଲେ ମୋର ତ ଅତିଥି ହୋଇଥାନ୍ତେ । ଗତ କାଲି ରାତିରେ ଫୋନ୍‌ରେ ବଳଭଦ୍ର ପ୍ରସାଦ ଖବର ଦେଲେ ଆଚାର୍ଯ୍ୟ ହରିହର ଦାଶ ଆପଣଙ୍କୁ ଦେଖାକରିବାକୁ ଯିବେ । ସେତିକି ବେଳଠାରୁ ମୁଁ ଉଦ୍‌ବେଗର ସହିତ ଆପଣଙ୍କ ଆସିବା-ବାଟକୁ ଚାହିଁ ବସିଛି । ପରେ ମୋଠାରୁ ବୁଝିଲେ ଆଚାର୍ଯ୍ୟ ମହାଶୟ କ'ଣ ଖାଉଛନ୍ତି ଏବଂ କପରି ଚଲବୁଲ କରୁଛନ୍ତି ଇତ୍ୟାଦି ? ଏ ସବୁ କଥାବାର୍ତ୍ତା ପ୍ରାୟ ୨୦ ମିନଟ୍ ପର୍ଯ୍ୟନ୍ତ ଚାଲିଲା । ଏହି କଥାବାର୍ତ୍ତା ଚାଲିଥିବା

ମଧ୍ୟରେ ଚନ୍ଦ୍ରନାଗାଙ୍କ ସେକ୍ରେଟାରୀ ବେଶୀ କଥାବାର୍ତ୍ତା ନ କରିବାକୁ ଚନ୍ଦ୍ରନାଗାଙ୍କୁ କହିଲେ । ଚନ୍ଦ୍ରନାଗା ଆବେଗପୂର୍ଣ୍ଣ କଣ୍ଠରେ କହିପକାଇଲେ, 'ସ୍ୱାଙ୍କର ମୋର ବନ୍ଧୁତା ତୁମକୁ ଜଣାନାହିଁ । ଏ ଜନ୍ମରେ ଆଉ ଭେଟ ହେବ କି ନାହିଁ ସନ୍ଦେହ । ହୁଏତ ଏହା ହିଁ ଶେଷ ସାକ୍ଷାତ । ଏହି କଥା କେଇପଦ କହିଲା ପରେ ତାଙ୍କ ଆଖିରେ ଲୁହ ଦେଖାଗଲା । ସତକୁ ସତ ଆଚାର୍ଯ୍ୟ ମହାଶୟଙ୍କର ଚନ୍ଦ୍ରନାଗାଙ୍କ ସହିତ ଆଉ ସାକ୍ଷାତ ହୋଇନି । ଆହ୍ଲାବାଦରୁ ଫେରି ପାଟନା, କଲିକତା ଦେଇ ଆଚାର୍ଯ୍ୟ ମହାଶୟ କଟକ ଫେରିଲେ ଏବଂ ଗୁଣନିଧି ବାବୁଙ୍କ ରୋଗ ଶଯ୍ୟା ପାଖରେ ରହିଲେ । ୧୭ ତାରିଖ ଡିସେମ୍ବର ମାସରେ ଗୁଣନିଧି ବାବୁଙ୍କର କଟକ ଡାକ୍ତର-ଖାନାରେ ମୃତ୍ୟୁ ହେଲା । ତା'ର କିଛିଦିନ ପରେ ଆଚାର୍ଯ୍ୟ ମହାଶୟ ପୁରୀଯାଇ ସେଠାରେ ରହିଲେ । ୧୯୬୨ ରୁ ୧୯୬୮ ଅଗଷ୍ଟ ୧୨ ତାରିଖ ପର୍ଯ୍ୟନ୍ତ ଏହି ୭ ବର୍ଷ ମଧ୍ୟରେ ଆଚାର୍ଯ୍ୟ ମହାଶୟଙ୍କ ସାଙ୍ଗରେ ମୁଁ ଅନେକ ଥର କଟକ, ମୟୂରଭଞ୍ଜ, ଅନୁଗୁଳ, ସମ୍ବଲପୁର, ରାଉରକେଲା, ବ୍ରହ୍ମପୁର, କେନ୍ଦୁଝର, କୋରାପୁଟ ଜିଲ୍ଲାରେ ମଟରରେ ବୁଲିଛି । ଏହିସବୁ ଅବସରରେ ଯେଉଁ ସବୁ ଅନୁଭୂତି ମୋର ହୋଇଛି ତାହା ଏ ଗ୍ରନ୍ଥ ଲେଖାରେ ଲିପିବଦ୍ଧ କରିବା ସମ୍ଭବପର ନୁହେଁ । ପରେ ମୁଁ ମୋର 'ଆଚାର୍ଯ୍ୟ ସାନ୍ନିଧ୍ୟେ' ବହିରେ ଲିପିବଦ୍ଧ କରିବାର ଇଚ୍ଛା ଅଛି । ଜାଣେ ନାହିଁ ତାହା ପୂରଣ ହେବ କି ନାହିଁ ।

ଆଜି ଆଚାର୍ଯ୍ୟ ମହାଶୟଙ୍କ ଜନ୍ମଦିନ ଏହିପରି ୧୯୬୦ ମସିହାରୁ ୧୨ ଗୋଟି ଜନ୍ମଦିନ ମୁଁ ତାଙ୍କ ସାଙ୍ଗରେ କଟାଇଲିଣି । ୧୯୫୯ ଡ଼ିସେମ୍ବର ୧୫ ତାରିଖରୁ ଆଜି ୧୯୭୧ ଫେବ୍ରୁୟାରୀ ୧୨ ତାରିଖ ପର୍ଯ୍ୟନ୍ତ ଏଗାର ବର୍ଷ ୨ ମାସ ମଧ୍ୟରେ ମୁଁ ସର୍ବମୋଟ ଏଗାର ମାସ ବି ତାଙ୍କୁ ଛାଡ଼ି ଦୂରରେ ରହିନାହିଁ । ଏବେ ସେ ବିଛଣାରେ ଶୋଇ ରହିଛନ୍ତି । ଉଠିବାର ଶକ୍ତି ନ ହିଁ । ଦେହରେ କ୍ଷତ ହୋଇ ଯାଉଛି । ସେଥିପ୍ରତି ଖାତିର୍ ନାହିଁ, ସର୍ବଦା ତାଙ୍କର ସମାଧି ଲାଗି ରହିଛି । ଗତ ଦେଢ଼ ବର୍ଷ ହେଲା ସେ ତରଳ ଖାଦ୍ୟ ଖାଉଛନ୍ତି; ଏବେ ତିନି ମାସ ହେଲା ସେତିକ ମଧ୍ୟ ନେବାର

ଆଗ୍ରହ ନାହିଁ । ତଥାପି ତାଙ୍କର ମୁଖମଣ୍ଡଳର ପ୍ରସନ୍ନତା ଭଳେ ହେଲେ ଊଣା ହୋଇ ନାହିଁ ।’

ତାଙ୍କର ଖାଦ୍ୟପେୟ ଅତି ସାଧାରଣ । ଭାତ ସହିତ ଡାଲି ଓ ଠାଏ ମାତ୍ର ତରକାରୀ ତାଙ୍କର ଦରକାର । ଏଥିରୁ ଅଧିକ ମିଳିଲେ ଭଲ କଥା । ନ ହେଲେ ତାଙ୍କର ଚିନ୍ତା ନାହିଁ । ଖାଇବା ପୂର୍ବରୁ ସେ ସର୍ବୋଦୟ ମନ୍ତ୍ର ଉଚ୍ଚାରଣ କରନ୍ତି ।

“ଯେଉଁବା ଆଗରୁ ମୁଖେ ସଦା ମୋ ନିତ୍ୟ ଭକ୍ଷ,
ଯେଉଁଥ ସତତ ମୁଦେ ପ୍ରଭୁ ହେ ଦୟାରକ୍ଷ ।”

ସନ୍ଧ୍ୟାପୂର୍ବରୁ ସେ ସଚ୍ଚିବାବୁଙ୍କ ସହ ଫେରି ଆସି ସାମାନ୍ୟ ଜଳଖିଆ ଖାଆନ୍ତି ଚୂଡ଼ାଭଜା, ମୁଡ଼ି, ଉଖୁଡ଼ା । ତାଙ୍କ ସଂସ୍ପର୍ଶରେ ଆସିଥିବା ନିତ୍ୟାନନ୍ଦ ଶତପଥୀ ଉଲ୍ଲେଖ କରିଅଛନ୍ତି, ‘ପାଟିରେ ଭିଜେଇ ଭିଜେଇ ନିର୍ବିକାର ଭାବରେ ସେ ଏଥିରୁ ଦିଟା ଖାଇଦିଅନ୍ତି । ପାଣି ଗ୍ଲାସେ ପିଅନ୍ତି । ତା’ପରେ ସାନ୍ଧ୍ୟ ପ୍ରାର୍ଥନା ।’

“ବିପଦ ନୁହଁଇତ ବିପଦ କେବେ
ସମ୍ପଦ ନୁହଁଇ ସମ୍ପଦ ଭବେ ।”

ସେହି ଅଧ୍ୟାପକ ଶତପଥୀ ସଚ୍ଚିବାବୁଙ୍କୁ ପଚାରିଥିଲେ, ‘ସଚ୍ଚିଭାଇ, ଆଚାର୍ଯ୍ୟଙ୍କୁ ଦୁଧ ଟୋପାଏ ଦେଉନାହିଁ ?’ ଏହି ପ୍ରଶ୍ନର ଉତ୍ତରରେ ସଚ୍ଚିବାବୁ କହିଲେ, ଏସବୁ ନେଉଁବାକୁ ପଇସା କାହୁଁ ପାଇବୁ ? କେତେଜଣ ଗୁଣିଙ୍କ ମାସିକ ଦାନରେ କୌଣସି ମତେ ଚଳିବାକୁ ହୁଏ । ଉତ୍କଳ ବିଶ୍ୱବିଦ୍ୟାଳୟର ପୂର୍ବତନ କୁଳପତି ଡାଃ ସଦାଶିବ ମିଶ୍ର କିଛି କିଛି ମାସିକ ଅର୍ଥ ସାହାଯ୍ୟ ଦିଅନ୍ତି । ସେମାନଙ୍କ ଦାନରେ କଷ୍ଟେ ମଷ୍ଟେ ଚଳିବାକୁ ହୁଏ । ଭୂଦାନ ସମିତି ମଧ୍ୟ କିଛି ଖର୍ଚ୍ଚ ଚଳାନ୍ତି ।

ସେଉଁ ଆଚାର୍ଯ୍ୟ ମହାଶୟ ଥରେ ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତିଙ୍କୁ ବିନୀତ ଭାବରେ କହିଥିଲେ, ‘ମୋର ଡକ୍ଟରେଟ ଉପାଧି ଲୋଡ଼ା ନାହିଁ । ଏହାକୁ ମୋ ଠାରୁ ନେଇ, ଯେଉଁମାନେ ପାଣ୍ଡିତ୍ୟ ଓ ମନୀଷା ଯୋଗୁ ଖ୍ୟାତି ଅର୍ଜନ କରିଅଛନ୍ତି, ସେହିମାନଙ୍କୁ ଦିଅନ୍ତୁ । ମୋର

ଏ ପଦ ପଦଷ୍ଟା ଲୋଡ଼ାନାହିଁ । ସେହି ଆଚାର୍ଯ୍ୟଙ୍କୁ ଯେତେବେଳେ ଅଧ୍ୟାପକ ଶତପଥୀ କହନ୍ତି, 'ଆପଣଙ୍କ ଜୀବନୀ କେବେ ଲେଖା ହେବ ?' ତା'ର ଉତ୍ତରରେ ସେ କହନ୍ତି, 'ମୋର କିବା ଜୀବନୀ, କିବା କଥା ? କ'ଣ ଏଥିରେ ବିଶେଷ ଘଟଣା ଅଛି ? ସବୁ ତ ଦାସେ ଆପଣେ ( ଗୋପବନ୍ଧୁ-ଦାଶ )' । ଏପରି ନିରହଙ୍କାର ଓ ନିରାଡମ୍ବର ବ୍ୟକ୍ତି କୋଟିକେ ଗୋଟିଏ ଦେଖିବାକୁ ମିଳିବା ସ୍ୱପ୍ନର ବିଷୟ ।

ଆଜି ଗୋଟିଏ ଦିନର ଘଟଣା ଏଠାରେ ବର୍ଣ୍ଣନା ନ କରି ରହିପାରୁ ନାହିଁ । କେତେ ବର୍ଷ ତଳର କଥା । ସେ କଟକ ଭୂଦାନ ଭବନରେ ଥାନ୍ତି । ସେତେବେଳକୁ ସେ ଅନ୍ଧ । ବାରଣ୍ଡାରୁ ତଳକୁ ଗଡ଼ିପଡ଼ିଲେ । ଦେହ କ୍ଷତବିକ୍ଷତ ହୋଇଗଲା । ମାତ୍ର ମୁହଁରେ ଗାଲ ଉଛୁଳା ହସ ଦେଖି ଡାକ୍ତର ମନେମନେ ବଡ଼ ବିରକ୍ତ ହୋଇ ତାଙ୍କୁ କହିଲେ, 'ଆପଣଙ୍କ ପାଖେ ଅନୁରକ୍ତ ସେବକ ଅଛନ୍ତି । ଆପଣ ସେମାନଙ୍କୁ ନ ଉଠାଇ କିମ୍ବା ସେମାନଙ୍କ ଭିତରୁ ଜଣକୁ ସଙ୍ଗରେ ନ ନେଇ ଏକୁଟିଆ କାହିଁକି ଗଲେ ?' ଆଚାର୍ଯ୍ୟେ ହସି ହସି ଡାକ୍ତରଙ୍କୁ ଉତ୍ତର ଦେଲେ, 'କହୋ, ଆଖିଥିବା ଲୋକେତ ଏତେ ଦୁର୍ଘଟଣା ଘଟାଉଛନ୍ତି ଯେ ରାଇଜ-ଯାକର ଆଇନ ଓ ଶାସନ ତାଙ୍କୁ ଆକୁଳାନ ହେଉଛି । ଆମପରି ଅନ୍ଧଲୋକର ଏତିକ ସାମାନ୍ୟ ଦୁର୍ଘଟଣାରେ ତୁମେ ଏତେ ବ୍ୟସ୍ତ କାହିଁକି ?' ଡାକ୍ତର ଏହା ଶୁଣି ମନେ ମନେ ଲଜ୍ଜିତ ହେଲେ ।

ଆଚାର୍ଯ୍ୟେ ଥିଲେ ଗୋଟିଏ ସ୍ୱତନ୍ତ୍ର ସ୍ତମ୍ଭ । ତାଙ୍କର ବନ୍ଧୁ ଶ୍ରୀଯୁକ୍ତ କୃପାସିନ୍ଧୁ ହୋତା କହିଥିଲେ, 'ଦିନେ ସନ୍ଧ୍ୟାରେ ମୋତେ ଗ୍ରାମରେ କେତେଜଣ ପଚାରିଲେ ଆଚାର୍ଯ୍ୟ ଓ ଗାନ୍ଧୀଙ୍କ ବିଷୟରେ ଆପଣଙ୍କ ମତ କ'ଣ ?' ମୁଁ କହିଲି,'ଉଭୟଙ୍କ ଭିତରେ ଚିନ୍ତା ଓ କର୍ମରେ ପୂରାପୂରି ମେଳ ଅଛି । କିନ୍ତୁ ଏତିକି ପ୍ରଭେଦ, ଗାନ୍ଧୀଙ୍କୁ ଲୋକେ ଗୁଳିକରି ମାରିଦେଲେ । କିନ୍ତୁ ଆଚାର୍ଯ୍ୟଙ୍କୁ ଦିନେ ଟେକାଟିଏ ଫିଙ୍ଗିବାକୁ କେହି ସାହସ କରିନାହିଁ । କାରଣ ତାଙ୍କ ପରି ନିର୍ଦ୍ଦୋଷ ମୁକ୍ତପୁରୁଷଙ୍କ ପ୍ରତି କାହାରି ଈର୍ଷା ବା ରାଗଦ୍ୱେଷ ନ ଥିଲା ।'

ସେ କେବଳ ସର୍ବୋଦୟର ନେତା ନ ଥିଲେ । ବିଛିନ୍ନ ଓଡ଼ିଶାର ଏକତ୍ରୀକରଣ ଦିଗରେ ତାଙ୍କର ଅବଦାନ ଅବିସ୍ମରଣୀୟ । ସେ ଗୋପବନ୍ଧୁଙ୍କ ମୃତ୍ୟୁପରେ 'ସମାଜ' ସମ୍ବାଦ ପତ୍ରର ସଂପାଦକ ଥାଇ ନିର୍ଭୀକ ଭାବରେ ଏହାର ପରିଚାଳନା କରୁଥିଲେ । ୧୯୪୪ଠାରୁ ୧୯୫୧ ଯାଏ ସେ ପ୍ରାଦେଶିକ କଂଗ୍ରେସ କମିଟିର ସଭ୍ୟଥିଲେ । କିଛିଦିନ ମଧ୍ୟ ସେ ଉତ୍କଳ କଂଗ୍ରେସ କମିଟିର ସଭାପତି ହୋଇଥିଲେ ।

ଶ୍ରୀ ଗୌରଶ୍ୟାମ ସାମନ୍ତରାୟ 'ଅଲିଭା ସ୍ମୃତି' ପ୍ରବନ୍ଧରେ ଲେଖି ଅଛନ୍ତି, ଭଦ୍ରଖରେ ଗୋଟିଏ ଦିନର ଘଟଣା ମନେ ପଡ଼େ । ମୁଁ ସେତେବେଳେ ସେବାଗ୍ରାମରୁ ଅଧ୍ୟୟନ ଶେଷ କରି ଜୀବଗ୍ରାମ ଖାଦି ବିଦ୍ୟାପୀଠର ଅଧ୍ୟାପକ ଭାବେ କାର୍ଯ୍ୟ କରୁଥାଏ । କେନ୍ଦୁଝରର ରାସ୍ତା କଡ଼ରୁ ଗୋଟିଏ ସଦ୍ୟଜାତ ଝିଅକୁ ଆଣି ଆମେ ଲାଳନ ପାଳନ କରୁଥାଉ । ସେହି ଅନାଥା ଝିଅଟିକୁ ଆଶୀର୍ବାଦ କରିବାପାଇଁ ମୁଁ ଆଚାର୍ଯ୍ୟଙ୍କୁ କହିଲି । ସେ ଗମ୍ଭୀର ମୁଖମଣ୍ଡଳରେ ଝିଅଟିକୁ କୋଳରେ ଧରି କହିଲେ, 'ଗୌରଶ୍ୟାମ, ଏ ଝିଅଟି ସୃଷ୍ଟି କର୍ତ୍ତାଙ୍କ ଝିଅ । ଯେଉଁ ବାପ, ମା ଏହାକୁ ରାସ୍ତାକଡ଼ରେ ପକାଇ ଦେଇ ଗଲେ, ସେମାନେ ସମାଜର କେତେତଳର ତାହା ତୁମେମାନେ ଅନୁଭବ କର । ସେମାନେ ମାନବ ଅବସ୍ଥାରେ ନାହାଁନ୍ତି । ପଶୁ ଜାତି ହେଲେ ବି ଯେତେ ବିପଦ ଆସୁନା କାହିଁକି, ସେ ତା ସନ୍ତାନକୁ ସଙ୍କଟରେ ଛାଡ଼ି ପଳାଏ ନାହିଁ । ତମେ ସବୁ ଏହିଭଳି ସମାଜର ଚରିତ୍ରକୁ ବଦଳେଇ ଦେବାପାଇଁ ଅଣ୍ଟାଭିଡ଼ି ବାହାରିବ । ଏ ଆଶା ମୁଁ ତମମାନଙ୍କଠାରେ ପୋଷଣ କରେ । ଏ ଝିଅଟି ଭବିଷ୍ୟତରେ ସିଦ୍ଧାଣୀ ନାକୀ ବୋହୂ ନ ହୋଇ ଭଲ ଗୃହିଣୀ ହେଉ । ଏହା ହିଁ ମୋର କାମନା ।' ସତକୁ ସତ ପୁରୀର ସତ୍ୟବାଦୀ ମିଶ୍ର ସେ ଝିଅଟିକୁ ନେଇ ରଖିଲେ । ସେ ଏବେ ଆଚାର୍ଯ୍ୟ ମହାଶୟଙ୍କ ଆଶୀର୍ବାଦରେ ଉତ୍ତମ ଗୃହିଣୀ ହୋଇପାରିଛି ।

ମହାତ୍ମା ଗାନ୍ଧୀଙ୍କ ବିଶ୍ୱ ପରିବାର ଭାବନାକୁ ଆଚାର୍ଯ୍ୟ ହରିହର ଶେଷ ପର୍ଯ୍ୟନ୍ତ ନିଜ ଜୀବନରେ ପ୍ରୟୋଗ କରି ସଫଳ ହୋଇପାରିଛନ୍ତି ।

ସାଧାରଣ କର୍ମୀଠାରୁ ଆରମ୍ଭ କରି ନେତା ପର୍ଯ୍ୟନ୍ତ, ନିଃସ୍ୱଠାରୁ ଆରମ୍ଭ କରି ଧନୀ ଲୋକ ପର୍ଯ୍ୟନ୍ତ ସମସ୍ତଙ୍କୁ ସେ ନିଜ ପରିବାରର ଲୋକ ପରି ମନେ କରି ସେହିଭଳି ସମବ୍ୟବହାର ଦେଖାଉଥିଲେ । କିଏ ରୋଗରେ ପଡ଼ିଲେ ପର ଆପଣା ମନେ ନ କରି ନିଜେ ରୋଗୀର ସେବା କରୁଥିଲେ । ତାଙ୍କ ସେବାରେ ରୋଗୀ ମନରେ ଆତ୍ମପ୍ରତ୍ୟୟ ସୃଷ୍ଟି ହୋଇପାରୁଥିଲା । ତେଣୁକରି ସେତେବେଳେ ଆମେ ଯେଉଁମାନେ ତାଙ୍କଦ୍ୱାରା ପରିଚାଳିତ ହୋଇ ଆସୁଥିଲୁ, ସେମାନଙ୍କୁ ନିଜ ପରିବାରର ମାୟା, ମମତା ଅଟକାଇ ପାରୁ ନ ଥିଲା । ଆଚାର୍ଯ୍ୟ ହରିହର ସମ ବ୍ୟବହାର ଓ ସମାଜସେବା କାର୍ଯ୍ୟ ପାଇଁ ପ୍ରେରଣା ଯୋଗାଉଥିଲେ । ସେ ତ ପିତା କେବଳ ନ ଥିଲେ, ମାତା ମଧ୍ୟ ଥିଲେ । ମା'ର ପୁଅ ପ୍ରତି ଯେପରି ଅଗାଧ ସ୍ନେହ ମମତା ଥାଏ, କର୍ମୀମାନଙ୍କ ପ୍ରତି ଆଚାର୍ଯ୍ୟ ମହାଶୟଙ୍କର ସେହିପରି ମାୟା ମମତା ଥାଏ । ସେହି ବ୍ୟାବହାରିକ ଆଦର୍ଶ ଯୋଗୁ କର୍ମୀମାନେ ସେତେବେଳେ ବହୁ ସଂଖ୍ୟାରେ ସମାଜସେବା ଭଳି କଠିନ କାର୍ଯ୍ୟ ପାଇଁ ନିସ୍ୱାର୍ଥ ଭାବେ ବାହାରି ଆସୁଥିଲେ । ସେହି ନେତୃତ୍ୱ ଆଜି ଦେଖିବାକୁ ମିଳୁନାହିଁ । ସେଥିପାଇଁ ସମାଜରେ ବହୁ ପ୍ରକାର ବିଶୃଙ୍ଖଳା ଦେଖା ଦେଇ ବଢ଼ି ବଢ଼ି ଚାଲିଛି । ଆଚାର୍ଯ୍ୟ ହରିହରଙ୍କ କର୍ମମୟ ଜୀବନର ଘଟଣାବଳୀ ମୋ ଭଳି ଜଣେ ସାଧାରଣ କର୍ମୀ କ'ଣ ବା ଆଙ୍କି ପାରିବ ? ସେ ତ ଥିଲେ ଜଣେ ମହର୍ଷି, ମରଣଜୟୀ । ଉଦ୍‌ଭାସିତ ବେଦନାକ୍ତ ମାନବ ପ୍ରାଣରେ ସେ ସୃଷ୍ଟି କରି ଯାଇଛନ୍ତି ମହାର୍ଘ ଚୁଆଳି ଓ ଜାତି ଆଗରେ ଜାଳି ଯାଇଛନ୍ତି ସେବାର ଅଲିଭା ମଶାଲ ।

ଶତାବ୍ଦୀର ତଳେ ଶତଦ୍ରୁର ବେଳା ଶ୍ୟାମ ତଟେ ଯେଉଁ ମହାନ୍ ବ୍ରହ୍ମବାଣୀ ଶତ ଶତ ଋଷି କଣ୍ଠରୁ ଭାସି ଆସି ଥିଲା ତାହାହିଁ ଆଚାର୍ଯ୍ୟ ମହାଶୟଙ୍କ କଣ୍ଠରେ ପ୍ରତିଫଳିତ ହୋଇଥିଲା । ଦଧୀଚି ଦେବତାମାନଙ୍କ ନିମନ୍ତେ ଅସ୍ଥିଦାନ କଲାପରି, ଆଚାର୍ଯ୍ୟ ହରିହର ସମାଜ ମଙ୍ଗଳ ପାଇଁ ସର୍ବୋଦୟ ସମାଜ ପ୍ରତିଷ୍ଠା ପାଇଁ ସବୁ କିଛି ଦେଇଗଲେ । ଆମମାନଙ୍କ ମେଳରୁ ମରି ଶରୀର ଛାଡ଼ି ଦୂରକୁ ଚାଲିଗଲେ ସତ; କିନ୍ତୁ ତାଙ୍କ ଜୀବନର ବାଣୀ-ଝର୍ଣ୍ଣା ସବୁ ଦିନେ କଳ କଣ୍ଠେ ଛଳ ଛଳେ ଗାଉଥିବ,—ତାଙ୍କର

ଚିତାଭସ୍ମ ବିସର୍ଜନ ହୋଇଥିବା ମହୋଦଧି କୂଳ ସମୀରଣ ତାଙ୍କର ଜୀବନ ସଂହିତା ସମାଜର ଗଳି କନ୍ଦରେ ପହଞ୍ଚାଇଥିବ, ତାଙ୍କର ପବିତ୍ର ଶୁଭ୍ର ଜ୍ୟୋତିକଣା ଏ ଜାତିର ବକ୍ଷରେ ବିଚ୍ଛୁରିତ ହୋଇ ରହିବ। ଇତିହାସ କେବେ ଭୁଲିବ ନାହିଁ; କିନ୍ତୁ ଏ ଜାତି ତାଙ୍କୁ ମନେ ରଖି ପାରିବତ ?

ଇତିହାସ ଓ ମାନବ ସମାଜ । ଏହି ଦୁଇଟି ଶବ୍ଦ ମଧ୍ୟରେ କି ପାର୍ଥକ୍ୟ ଅଛି ? ଯଦି ଇତିହାସକୁ ବିସ୍ମୃତିର ଅତଳ ଗହ୍ୱରରୁ ଉଦ୍ଧାର କରି ମନୁଷ୍ୟ ସେହି ଆଦର୍ଶରେ ଅନୁପ୍ରାଣିତ ନ ହେଲା ତାହା ହେଲେ ସେ ଇତିହାସର ମୂଲ୍ୟ ବା କ'ଣ ? ଆଜ ଗୁରୁକୁଳାଶ୍ରମ ପ୍ରତିଷ୍ଠାକରି ଆମ୍ଭେମାନେ ପ୍ରାଚ୍ୟ ଓ ପାଶ୍ଚାତ୍ୟ ଶିକ୍ଷାର ସମ୍ମିଳନରେ ଗୋଟିଏ ଆଦର୍ଶ ନୂତନ ଶିକ୍ଷାପଦ୍ଧତି ପ୍ରଚଳନ କରିବାକୁ ଗୃହୁଁ । ସତ୍ୟବାଦୀ ବନବିଦ୍ୟାଳୟ ଏହାର ଜୀବନ୍ତ ଆଦର୍ଶ ଥିଲା । ପ୍ରାଚୀନ ଭାରତର ଅଜ୍ଞାତ ଇତିହାସର ମୂଲ୍ୟ ଭଲକରି ସତ୍ୟବାଦୀର ଗୋଷ୍ଠୀ ବୁଝିଥିଲେ । ସେହିପରି ଆଚାର୍ଯ୍ୟ ହରିହରଙ୍କୁ କେବଳ ନୀରସ ଓ ଶୁଷ୍କ ଇତିହାସ କରି ରଖିଦେଲେ, କାହାର ଲାଭ ? ଇତିହାସର ନା ଆଚାର୍ଯ୍ୟ ହରିହରଙ୍କର ? ଆମ୍ଭମାନଙ୍କର ବିଶ୍ୱାସ, ଆଚାର୍ଯ୍ୟଙ୍କୁ ପ୍ରତ୍ୟହ ସ୍ମରଣ କରିବାକୁ ହେବ । ସେହି ସତ୍ୟର ପୂଜାରୀ ଆଚାର୍ଯ୍ୟଙ୍କୁ ଦୈନିକ କାର୍ଯ୍ୟ କ୍ଷେତ୍ରରେ ସଦାବେଳେ ଅନୁସରଣ କରିବାକୁ ହେବ । ତାଙ୍କର ସାଧାରଣ ଜୀବନ ପ୍ରଣାଳୀକୁ ଅବଲମ୍ବନ କରିବାକୁ ହେବ । ପ୍ରଥମେ ପରିବାର, ତା'ପରେ ଦେଶ ଓ ସମାଜ ଏବଂ ସର୍ବୋପରି ବିଶ୍ୱର କଲ୍ୟାଣ ନିମନ୍ତେ ଆଚାର୍ଯ୍ୟ ହରିହରଙ୍କ ପରି ଜୀବନ ଉତ୍ସର୍ଗ କରିବାକୁ ହେବ । ଏହା ନ କଲେ ଆଚାର୍ଯ୍ୟଙ୍କ ଜୀବନର ମହିମାପୂର୍ଣ୍ଣ ଇତିହାସର ଅବମାନନା ହେବ । ତା ନ ହେଲେ 'ଭଲ ମଣିଷ ହୁଅ' ଏହାର ଅର୍ଥ ବା କ'ଣ ?



# ଭକ୍ତ କବି ସମୀକ୍ଷା

## ( ଆଚାର୍ଯ୍ୟଙ୍କର ସାହିତ୍ୟ ଚର୍ଚ୍ଚା )

— ୮ —

ସତ୍ୟବାଦୀ ବିଦ୍ୟାଳୟରେ ଶିକ୍ଷକତା କରୁଥିବାବେଳେ ଆଚାର୍ଯ୍ୟ ମହାଶୟ ସାହିତ୍ୟ ଚର୍ଚ୍ଚାର ପ୍ରେରଣା ଗୋପବନ୍ଧୁ, ନୀଳକଣ୍ଠ ଓ ଗୋଦାବରୀଶଙ୍କଠାରୁ ପାଇଥିଲେ । ନୀଳକଣ୍ଠ ବାବୁ ଥିଲେ ସେତେବେଳେ ସାହିତ୍ୟର ଅଫୁରନ୍ତ ଉତ୍ସ । ଗୋପବନ୍ଧୁଙ୍କ ସଂପାଦିତ 'ସତ୍ୟବାଦୀ' ମାସିକ ପତ୍ରିକାରେ ସେ ନାନା ବିଷୟରେ ପ୍ରବନ୍ଧମାନ ଲେଖି ଓଡ଼ିଆ ସାହିତ୍ୟରେ ନବଜାଗରଣ ଓ ଉଦ୍ଦୀପନାର ସୂତ୍ରପାତ କରିଥିଲେ । ତାଙ୍କର ଚେଷ୍ଟାରେ ସତ୍ୟବାଦୀରେ ଗୋଟିଏ ପୁସ୍ତକ ପ୍ରକାଶକ ସଂସ୍ଥା ଗଠିତ ହୋଇଥିଲା । ଆଚାର୍ଯ୍ୟ ହରିହର ଥିଲେ ଏହାର ପ୍ରକାଶକ । ତାଙ୍କର ଦାୟିତ୍ୱରେ ଛାତ୍ରମାନଙ୍କର ମଙ୍ଗଳ ଓ ସୁବିଧା ନିମନ୍ତେ କେତେଗୁଡ଼ିଏ ପୁସ୍ତକ ପ୍ରକାଶିତ ହୋଇଥିଲା । ଯଥା :—'ପ୍ରବନ୍ଧ ପ୍ରବେଶ', 'Passages for translation' ଏବଂ ନୀଳକଣ୍ଠ ଦାଶଙ୍କର 'Model Drawing' ଏବଂ 'ଲିପି ସଂସ୍କାର' ପ୍ରଭୃତି । ସେତେବେଳେ ଆଚାର୍ଯ୍ୟଙ୍କୁ ବହିପତ୍ର ଲେଖିବାର ସମୟ ଓ ସୁବିଧା ନ ଥିଲେ ମଧ୍ୟ ସେ ସାହିତ୍ୟିକ ବାତାବରଣ ମଧ୍ୟରେ ରହି କପରି ସଦ୍‌ଗ୍ରନ୍ଥମାନ ରଚନା କରିବେ ଏହି ଭାବନାର ବଶବର୍ତ୍ତୀ ହୋଇଥିଲେ ।

୧୯୨୮ ମସିହା ବେଳକୁ ତାଙ୍କ "Child's Easy First Grammar"ର ଦ୍ୱିତୀୟ ସଂସ୍କରଣ ପ୍ରକାଶ ପାଇଥିଲା । ଏହା ଓଡ଼ିଆ ଭାଷାରେ ରଚିତ ହୋଇଥିଲା । ଛାତ୍ରମାନଙ୍କର ଇଂରାଜୀ ଶିକ୍ଷାର ମୂଳଭିତ୍ତି ହେଉଛି ଏହି ବହିଟି । ଏହି ବହିରେ ଇଂରାଜୀ Grammar ର ସଂଜ୍ଞା ଏହିପରି ଦିଆଯାଇଛି ।

"ଯେଉଁ ଶାସ୍ତ୍ର ପାଠକଲେ, ଇଂରାଜୀ ଭାଷା ଶୁଦ୍ଧକରି କହି ଓ ଲେଖିହୁଏ, ତାହାକୁ ଇଂରାଜୀ ବ୍ୟାକରଣ କହନ୍ତି ।'

English Grammar, ପାଞ୍ଚ ଭାଗରେ ବିଭକ୍ତ । ଯଥା :— Orthography (ବର୍ଣ୍ଣ ପ୍ରକରଣ , Etymology (ପଦ ପ୍ରକରଣ), Syntax (ବାକ୍ୟ ବା ପଦ ବିନ୍ୟାସ ପ୍ରକରଣ ), Punctuation (ଚିହ୍ନ ପ୍ରକରଣ), Prosody (ଛନ୍ଦ ପ୍ରକରଣ) । ପ୍ରାଥମିକ ଶିକ୍ଷା ନିମନ୍ତେ ଶେଷ ଦୁଇଟିର ଆବଶ୍ୟକତା ନ ଥିବାରୁ ଏହି 'Grammar'ରେ ତାହା ଉପେକ୍ଷିତ ହେଲା ।"

ଇଂରାଜୀ ଭାଷାର ପ୍ରାଥମିକ ଶିକ୍ଷା ନିମନ୍ତେ ଏହି ବ୍ୟାକରଣ ବହିଟି କେତେ ଉପାଦେୟ ତାହା ଏବେ ସୁଦ୍ଧା ଶିକ୍ଷକମାନେ ସ୍ୱୀକାର କରନ୍ତି ।

The Conjunctionର ସଂଜ୍ଞା ଦେବାକୁ ଯାଇ ସେ ଲେଖି ଅଛନ୍ତି– "ଯେଉଁ ସବୁ word ଦୁଇ ବା ଅଧିକ word କିମ୍ୱା Sentenceକୁ ସଂଯୁକ୍ତ କରେ, ସେମାନଙ୍କୁ Conjunction କହନ୍ତି । ଯଥା :— He and I went there, Gopal is good, but Hari is bad, ଏଠାରେ and, 'he' ଓ 'I' ଏହି ଦୁଇଟି word କୁ ଏବଂ but,, 'Gopal is good' ଓ 'Hari is bad' ଏହି ଦୁଇଟି Sentence କୁ ସଂଯୁକ୍ତ କରୁଅଛି, ସୁତରାଂ 'and' ଓ 'but' Conjunction ।" ସବୁ ଶେଷରେ ଗୋଟିଏ ଶବ୍ଦ ଭାଷାରେ କିପରି ଭିନ୍ନ ଭିନ୍ନ ଭାବରେ ବ୍ୟବହୃତ ହୁଏ ତାହାର ବିଶେଷ ଉଦାହରଣ ଦେଇ ଅଛନ୍ତି । ଯେପରି Down ଶବ୍ଦ

Down :—( 1 ) Adverb—Please sit down.
( 2 ) Preposition — He travelled down the street.
( 3 ) Adjective—Down train.
( 4 ) Noun—The ups and downs of life.

ଏତ ଗଲା ଆଚାର୍ଯ୍ୟଙ୍କର ସାଧାରଣ ସାହିତ୍ୟ ଚର୍ଚ୍ଚା । ଏଥିରେ ତାଙ୍କର ବିଶେଷ କିଛି ଅସାଧାରଣ କୃତିତ୍ୱ ନାହିଁ । ଏହା ଇଂରାଜୀ ଗ୍ରାମାରର ପଦାଙ୍କ ଅନୁସରଣ ମାତ୍ର । କିନ୍ତୁ ଏହି ବହିଦ୍ୱାରା ଛାତ୍ରମାନେ ବହୁ ଭାବରେ ଉପକୃତ ହୋଇଅଛନ୍ତି ଏବଂ ଏବେ ମଧ୍ୟ ହେଉଅଛନ୍ତି । ଏ କଥା କହିବା ନିଷ୍ପ୍ରୟୋଜନ ।

ଏହା ବ୍ୟତୀତ ଏହାଙ୍କର ଶ୍ରୀମଦ୍ଭଗବଦ୍‌ଗୀତା, ଉପନିଷଦ୍‌ର ଟୀକା ସରଳ ପ୍ରାଞ୍ଜଳ ଓଡ଼ିଆ ଅନୁବାଦ ଯଥାର୍ଥରେ ତାଙ୍କର ଧର୍ମପରାୟଣତାର ପରିଚାୟକ । ଗୀତାର ଭାଷ୍ୟ ଓ ଅନୁବାଦ ଅନେକ ଲୋକ ଲେଖିଅଛନ୍ତି ।

କିନ୍ତୁ ଆଚାର୍ଯ୍ୟଙ୍କର ଗୀତାର ଯେତେ ସଂସ୍କରଣ ହୋଇଅଛି, ନୀଳକଣ୍ଠଙ୍କର ଗୀତାର ସେତେ ସଂସ୍କରଣ ହୋଇନାହିଁ । ଏହି ଦୁଃଖ ଓ କ୍ଷୋଭ ପ୍ରକାଶ କରି ନୀଳକଣ୍ଠ ଥରେ ଆମ୍ଭମାନଙ୍କୁ କହିଥିଲେ, 'ମୋ ଗୀତା କ'ଣ କେହି ବୁଝିପାରୁ ନାହାନ୍ତି ? ହରିଭାଇନାଙ୍କ ଗୀତାର ଏତେ ଆଦର ! ଅଥଚ ମୋ ଗୀତା ବହି ସେହିପରି ଦୋକାନରେ ପଡ଼ିଛି ।'

ଆଚାର୍ଯ୍ୟଙ୍କ ଗୀତାର ନୂତନ ସଂସ୍କରଣ କଟକରୁ ପ୍ରକାଶ ପାଏ ୧୯୬୬ ମସିହା ଦଶହରା ଦିନ । ଏହା ପୂର୍ବରୁ ଅବଶ୍ୟ ଗୀତାର କେତେକ ସଂସ୍କରଣ ମୁଦ୍ରିତ ହୋଇ ପାଠକମାନଙ୍କ ଦ୍ୱାରା ଆନନ୍ଦରେ ଗୃହୀତ ହୋଇଅଛି । ଏହି ଗୀତାର ଦ୍ୱିତୀୟ ଅଧ୍ୟାୟରେ (ସାଂଖ୍ୟଯୋଗ) ଆଚାର୍ଯ୍ୟ ଲେଖିଅଛନ୍ତି, ତୁମେ ଈଶ୍ୱର, ତୁମର ଜନ୍ମ ମୃତ୍ୟୁ ନାହିଁ ସତ; କିନ୍ତୁ ଜୀବମାନଙ୍କର ତ ଜନ୍ମ ମୃତ୍ୟୁ ଅଛି । ଏହାର ଉତ୍ତରରେ ଭଗବାନ ଶ୍ରୀକୃଷ୍ଣ କହୁ ଅଛନ୍ତି,'ଯେପରି ଏହି ସ୍ଥୂଳ ଦେହରେ ଜୀବନର କୌମାର, ଯୌବନ ଓ ଜରା ( ଏହି ତିନି ଅବସ୍ଥା କ୍ରମରେ ହୁଏ ) ସେହିପରି ଅନ୍ୟ ଦେହ ପ୍ରାପ୍ତି ମଧ୍ୟ ହୁଏ, ଏଣୁ ବିବେକୀମାନେ ସେଥିରେ ମୋହିତ ହୁଅନ୍ତି ନାହିଁ ।'

"ଆଶ୍ଚର୍ଯ୍ୟବତ୍ ପଶ୍ୟତି କଶ୍ଚିଦେନ—  
ମାଶ୍ଚର୍ଯ୍ୟବଦ୍ ବଦତି ତଥୈବ ଚାନ୍ୟଃ ।  
ଆଶ୍ଚର୍ଯ୍ୟବଚ୍ଚୈନମନ୍ୟଃ ଶୃଣୋତି  
ଶ୍ରୁତ୍ୱାପ୍ୟେନଂ ବେଦ ନ ଚୈବ କଶ୍ଚିତ୍ ।"

( ଆତ୍ମା ଯେ ଦୁର୍ବିଜ୍ଞେୟ । ଏଥିପାଇଁ କହୁଛନ୍ତି, କେହି କେହି ଏହି ଆତ୍ମାକୁ ଆଶ୍ଚର୍ଯ୍ୟ ପରି ଦେଖନ୍ତି ଓ ସେହିପରି କେହି କେହି ଆଶ୍ଚର୍ଯ୍ୟ ପ୍ରକାର ବର୍ଣ୍ଣନା କରନ୍ତି । କେହି କେହି ଏହାକୁ ଆଶ୍ଚର୍ଯ୍ୟ ପରି ଶୁଣନ୍ତି, ଆଉ କେହି କେହି ବା ଶୁଣିଲେ ମଧ୍ୟ ଆତ୍ମାକୁ ଜାଣିପାରନ୍ତି ନାହିଁ । )

ବିନୋବାଜୀ ତାଙ୍କର 'ଗୀତା ପ୍ରବଚନ' ବହିରେ କହିଅଛନ୍ତି, 'ଗଙ୍ଗାର ପ୍ରବାହ ସ୍ୱଭାବତଃ ସବୁ ସ୍ଥାନରେ ପାବନ ଓ ପବିତ୍ର; କିନ୍ତୁ ହରଦ୍ୱାର, କାଶୀ, ପ୍ରୟାଗ ଭଳି ସ୍ଥାନ ବେଶୀ ପବିତ୍ର । ସେଗୁଡ଼ିକ ସମଗ୍ର ପୃଥିବୀକୁ ପବିତ୍ର କରି ଦେଇଛନ୍ତି । ଭଗବତ୍ ଗୀତା ମଧ୍ୟ ସେହିପରି । ଭଗବତ୍ ଗୀତା ଆରମ୍ଭରୁ ଶେଷ ଯାଏ ସବୁ ସ୍ଥାନରେ ପବିତ୍ର; କିନ୍ତୁ ମଝିରେ ଏପରି କେତୋଟି ଅଧ୍ୟାୟ ରହିଛି, ଯେଉଁଗୁଡ଼ିକ ତୀର୍ଥକ୍ଷେତ୍ର ହୋଇଯାଇଛି । ଆଜି ଯେଉଁ ଅଧ୍ୟାୟ ବିଷୟରେ ମୋର କହିବାର ଅଛି, ତାହା ଅତ୍ୟନ୍ତ ପବିତ୍ର ତୀର୍ଥଭଳି ହୋଇଯାଇଛି । ସ୍ୱୟଂ ଭଗବାନ ମଧ୍ୟ ଏହାକୁ 'ଅମୃତ ଧାରା' କହିଛନ୍ତି,—"ଯେ ତୁ ଧର୍ମ୍ୟା-ମୃତମିଦଂ ଯଥୋକ୍ତଂ ପର୍ଯ୍ୟୁପାସତେ ।" ଏ ଅଧ୍ୟାୟଟି ଛୋଟିଆ, ଏଥିରେ କୋଡ଼ିଏଟି ମାତ୍ର ଶ୍ଳୋକ ଅଛି; ମାତ୍ର ଏହା ପୂର୍ଣ୍ଣ ଅମୃତଧାରା । ଅମୃତଭଳି ମଧୁର ଓ ସଞ୍ଜୀବକ ଅଟେ । ଏ ଅଧ୍ୟାୟରେ ଭଗବାନ ସ୍ୱମୁଖରେ ଭକ୍ତିରସ ମହିମାର ତତ୍ତ୍ୱ ବଖାଣିଛନ୍ତି ?

ଆଚାର୍ଯ୍ୟ ତାଙ୍କ ଗୀତାର ଦ୍ୱାଦଶ ଅଧ୍ୟାୟରେ ଲେଖିଅଛନ୍ତି, 'ମୋ ଭକ୍ତମାନେ ମୋ କୃପାରୁ ଅନାୟାସରେ ସିଦ୍ଧିଲାଭ କରନ୍ତି । ହେ ପାର୍ଥ, ଯେଉଁମାନେ ସମସ୍ତ କର୍ମ ମୋଠାରେ ସମର୍ପଣ କରି ମତ୍ପରାୟଣ ହୋଇ ଏକାନ୍ତ ଭକ୍ତି ଯୋଗରେ ଧ୍ୟାନନିରତ ହୋଇ ମୋତେ ଆରାଧନା କରନ୍ତି, ମୋଠାରେ ସମର୍ପିତ ଚିତ୍ତ ସେହି ସାଧକମାନଙ୍କୁ ମୁଁ ଅବିଳମ୍ବରେ ମୃତ୍ୟୁମୟ ସଂସାର ସାଗରରୁ ସମ୍ୟକ୍ ରୂପରେ ଉଦ୍ଧାର କରେ । ଅତଏବ ମୋଠାରେ ମନ ସ୍ଥିର କରି, ମୋଠାରେ ବ୍ୟବସାୟାତ୍ମିକା ବୁଦ୍ଧି ନିବେଶିତ କର ( ତାହାହେଲେ ମୋ ପ୍ରସାଦରେ ଜ୍ଞାନ ଲାଭ କରି ), ଦେହାନ୍ତେ ମୋରିଠାରେ ଅବସ୍ଥାନ କରିବ ;

ଏ ବିଷୟରେ ସନ୍ଦେହ ନାହିଁ । ଯଦି ତୁମେ ଅଭ୍ୟାସ ଯୋଗରେ ମଧ୍ୟ ଅସମର୍ଥ ହୁଅ, ତେବେ ମୋର ପ୍ରୀତି ସଂପାଦନ ପାଇଁ ଯେଉଁ ସବୁ କର୍ମର ବିଧାନ ଅଛି ତାହା ହିଁ କର । ମୋ ପାଇଁ କର୍ମକଲେ ତୁମେ ମୁକ୍ତିଲାଭ କରିବ ।'

ସମସ୍ତ ପ୍ରାଣୀଙ୍କ ପ୍ରତି ଦ୍ୱେଷ ଶୂନ୍ୟ ( ସମାନଠାରେ ) ମୈତ୍ରୀ, (ହୀନଠାରେ) କୃପାଳୁ, ଅହଙ୍କାରଶୂନ୍ୟ, ସୁଖ ଦୁଃଖରେ ସମଭାବାପନ୍ନ, କ୍ଷମାଶୀଳ, ପ୍ରସନ୍ନଚିତ୍ତ, ଅପ୍ରମତ୍ତ, ସଂଯତେନ୍ଦ୍ରିୟ, ଦୃଢନିଷ୍ଠୟ ଏବଂ ମୋଠାରେ ମନୋବୁଦ୍ଧି ସମର୍ପଣକାରୀ, ଏହିପରି ଯେ ମୋର ଭକ୍ତ, ସେ ମୋର ପ୍ରିୟ ।'

ଯାହାଙ୍କଠାରୁ ଲୋକେ ଉଦ୍‌ବେଗ ପ୍ରାପ୍ତ ହୁଅନ୍ତି ନାହିଁ, ଆଉ ଯେ ଲୋକମାନଙ୍କଠାରୁ ନିଜେ ଉଦ୍‌ବେଗ ପ୍ରାପ୍ତ ହୁଅନ୍ତି ନାହିଁ, ଆଉ ଯେ (ସ୍ୱାଭାବିକ) ହର୍ଷ, ପରଶ୍ରୀକାତରତା, ଭୟ ଏବଂ ଉଦ୍‌ବେଗ ପ୍ରଭୃତିରୁ ସଂପୂର୍ଣ୍ଣ ମୁକ୍ତ ସେ ମଧ୍ୟ ମୋର ପ୍ରିୟ ଅଟନ୍ତି । ଏହିପରି ଭାବରେ ସରଳ, ନିରାଡମ୍ବର ଓ ସଂଯତ ଭାଷାରେ ଆଚାର୍ଯ୍ୟ ମହାଶୟ ଗୀତାର ଦ୍ୱାଦଶ ଅଧ୍ୟାୟର ଅନୁବାଦ କରି ବିନୋବାଜୀଙ୍କର ଉକ୍ତିର ଯଥାର୍ଥ ପ୍ରତିପାଦନ କରିଅଛନ୍ତି ।

ପୁଣି ବିନୋବାଜୀ ତାଙ୍କର 'ଗୀତା ପ୍ରବଚନ'ରେ କହିଅଛନ୍ତି, 'ମୁଁ ଗୀତାର ନାମ 'ସାମ୍ୟଯୋଗ' ଦେଇଛି । ପ୍ରାଣୀ ମାତ୍ରରେ ଭଗବାନଙ୍କୁ ସମାନରୂପେ ଦେଖିବା ଓ ଆତ୍ମୌପମ୍ୟ ବୁଦ୍ଧି ଦ୍ୱାରା ଅର୍ଥାତ୍ ନିଜ ପ୍ରତି ସବୁ କଥା ଖଟେଇ ଅନ୍ୟମାନଙ୍କ ସହିତ ତଦନୁସାରେ ବ୍ୟବହାର କରିବା,– ଏହାକୁ ମୁଁ ସାମ୍ୟଯୋଗର ସ୍ୱରୂପ ବୋଲି ବୁଝିଛି । ବର୍ତ୍ତମାନ ପାଇଁ ଏବଂ ଭବିଷ୍ୟତର ବୈଜ୍ଞାନିକ ଯୁଗ ପାଇଁ ପୂର୍ଣ୍ଣ ସନ୍ତୋଷ ଏଥିରୁ ମିଳିପାରିବ । ସାମ୍ୟଯୋଗ ସିଦ୍ଧି ହିଁ ହେଉଛି ବିଜ୍ଞାନ ଯୁଗର ଫଳଶ୍ରୁତି । ଭୂଦାନଯଜ୍ଞ କାମ ଯେଉଁ ଦିନଠାରୁ ଭଗବାନ ମୋତେ ସୂଚେଇଲେ, ସେହି ଦିନଠାରୁ ମୋର ଧାରଣା ହୋଇଛି, ଯେ ମୁଁ ଜୀବନସାରା ଯେଉଁ ଗୀତାର ଉପାସନା କରିଛି, ତାହାରି ଫଳ ସ୍ୱରୂପ ମୁଁ ଏ ଲାଭ ପାଇଲି ।'

ଏହି ଉଦ୍ଧୃତ ଆଚାର୍ଯ୍ୟ ହରିହର ଦାଶଙ୍କର ଭଗବତ୍ ଗୀତା ପ୍ରତି ସଂପୂର୍ଣ୍ଣ ରୂପେ ପ୍ରଯୁଜ୍ୟ ବୋଲି ମନେହୁଏ ।

## ଉପନିଷଦ

ତା'ପରେ ଜେଲ୍ ଭିତରେ ସେ ଯେଉଁ ଗୀତା ଓ ଉପନିଷଦ କ୍ଳାସ ଗୋପ ଚୌଧୁରୀ ଓ ଅନ୍ୟାନ୍ୟ ରାଜନୈତିକ ବନ୍ଦିମାନଙ୍କୁ ନେଇ କରୁଥିଲେ, ତା'ର ଫଳ ସ୍ୱରୂପ ଛାନ୍ଦୋଗ୍ୟ ଉପନିଷଦ ବହୁ ପୂର୍ବରୁ ପ୍ରକାଶ ପାଇଥିଲା । ୧୯୭୪ ମସିହାର ୨୮ ଜାନୁୟାରୀରେ ଶ୍ରୀପଞ୍ଚମୀ ଦିନ ତାଙ୍କର ନିମ୍ନଲିଖିତ ଉପନିଷଦ୍ ସବୁ ଯଥା :—ଈଶାବାସ୍ୟୋପନିଷଦ, କେନୋପନିଷଦ୍, କଠୋପନିଷଦ୍, ପ୍ରଶ୍ନୋପନିଷଦ୍, ମୁଣ୍ଡକୋପନିଷଦ୍, ମାଣ୍ଡୁକ୍ୟୋପନିଷଦ୍ ପ୍ରକାଶ ପାଇଲା । ଏଥିରେ ଉପନିଷଦ୍‌ମାନଙ୍କର ମନ୍ତ୍ର ଏବଂ ତାହାର ଟୀକା ସରଳ ଭାଷାରେ ଦିଆଯାଇଛି । ଏମାନଙ୍କର ମୂଲ୍ୟ ଯଥାର୍ଥ ଭାବରେ ବୁଝିଥିଲେ ପାଶ୍ଚାତ୍ୟ ମନୀଷୀମାନେ ।

Max Muller, ଏହି ଉପନିଷଦ୍‌ମାନ ପାଠକରି ଏବଂ ଏଥିରେ ମନ୍ତ୍ରମୁଗ୍ଧ ହୋଇ ଲେଖିଥିଲେ, 'The upanishads are the ··· sources of ··· the Vedanta Philosophy, a system in which human speculation seems to me to have reached its very acme.

I spend my happiest hours in reading Vedantic books. They are to me like the light of the morning, like the pure air of the mountain,—So simple, so true, if once understood.'

ଅର୍ଥାତ୍ Max Mullar କହନ୍ତି, 'ଉପନିଷଦ ବେଦାନ୍ତ ଦର୍ଶନର ମୂଳଭିତ୍ତି । ମାନବୀୟ ଚିନ୍ତା ବ୍ରହ୍ମରୂପୀ ଭଗବାନଙ୍କଠାରେ ଆଉ କେତେ-ଦୂର ଅଗ୍ରସର ହୋଇପାରେ ତାହା ମୋର କଳ୍ପନାରେ ନାହିଁ । ଅର୍ଥାତ୍ ଈଶ୍ୱରଙ୍କ ସମ୍ବନ୍ଧରେ ମାନବୀୟ ଚିନ୍ତାର ଏହା ସର୍ବଶ୍ରେଷ୍ଠ ନିଦର୍ଶନ । ଏହି ସବୁ ଗ୍ରନ୍ଥ ପଢ଼ି ମୁଁ ଜୀବନରେ ଅସୀମ ସୁଖ ଓ ଆନନ୍ଦ ଉପଲବ୍ଧି

କରଅଛି । ଏହି ମନ୍ତ୍ର ସବୁ ଭଲକରି ବୁଝିପାରିଲେ ମନେହେବ ସତେ ଯେପରି ଏ ଗୁଡ଼ିକ ପ୍ରାତଃକାଳର ଆଲୋକ ଏବଂ ପର୍ବତର ବିଶୁଦ୍ଧ ବାୟୁ । ଏହି ମନ୍ତ୍ର ଗୁଡ଼ିକ ଏପରି,—ସତ୍ୟ, ଶିବ ଓ ସୁନ୍ଦରର ସମନ୍ୱୟ ।'

ପୃଥିବୀର ଜଣେ ବିଶିଷ୍ଟ ଦାର୍ଶନିକ Schopenhauer କହନ୍ତି, 'ଉପନିଷଦର ପ୍ରତ୍ୟେକ ଶ୍ଳୋକ ଗଭୀର ତାତ୍ପର୍ଯ୍ୟ ପୂର୍ଣ୍ଣ ! ଏଥିରେ ଉଚ୍ଚ ଚିନ୍ତାମାନଙ୍କର ସମାବେଶ ଦେଖିବାକୁ ମିଳେ । ଏହି ଜଗତରେ ଉପନିଷଦ୍ ପରି ଗ୍ରନ୍ଥ ଦୁଷ୍ପ୍ରାପ୍ୟ । ଜଙ୍ଗଲକୋଠରିର ବ୍ରହ୍ମଋଷି ଓ ସନ୍ନ୍ୟାସୀମାନଙ୍କଦ୍ୱାରା ବେଦାନ୍ତର ଏହି ମନ୍ତ୍ରସବୁ ରଚିତ ହୋଇଅଛି କି ? ଏହାକୁ ଯେ ମନଯୋଗ ସହିତ ପାଠକରି ବସେ ନିଶ୍ଚୟ ଏଥିରେ ପ୍ରଭାବିତ ହେବ ।'

ଆଚାର୍ଯ୍ୟ ହରିହର ବୋଧହୁଏ ଏହି ସବୁ ଭାବରେ ପ୍ରଣୋଦିତ ହୋଇ ଉପନିଷଦ୍‌ମାନଙ୍କରେ ହାତ ଦେଇଥିବେ । ଶଙ୍କରାଚାର୍ଯ୍ୟ ଏହି ଉପନିଷଦ୍‌ମାନଙ୍କ ମଧ୍ୟରୁ କେତେକର ବ୍ୟାଖ୍ୟା କରିଅଛନ୍ତି । ୧୯୪୨ ଅଗଷ୍ଟ ମାସରେ ବ୍ରହ୍ମପୁର ଜେଲରେ ୨ବର୍ଷ କାଳ ପ୍ରତିଦିନ ଜଗନ୍ନାଥ ଦାସ, ଲୋକନାଥ ମିଶ୍ର, ଗୋପବନ୍ଧୁ ଚୌଧୁରୀ ଓ ଭଗୀରଥି ମହାପାତ୍ରଙ୍କ ମେଳରେ ବସି ସେ ଗୀତା ଓ ଉପନିଷଦ୍ ପଢ଼ାନ୍ତି ବୋଲି ଶ୍ରୀ ବିନୋଦ କାନୁନ୍‌ଗୋ ଲେଖିଅଛନ୍ତି । ଏହି କ୍ଲାସରେ ଶଙ୍କରାଚାର୍ଯ୍ୟଙ୍କର ଉପନିଷଦ୍‌ର ଟୀକା ହୁଏତ ଆଚାର୍ଯ୍ୟ ଦେଖିଥିବେ । ସେଥିରେ ପ୍ରଭାବିତ ହୋଇ ସେ ଅବଶ୍ୟ ପରବର୍ତ୍ତୀ କାଳରେ ଉପନିଷଦ୍‌ର ଟୀକା ଲେଖିବାକୁ ଆରମ୍ଭ କଲେ । କିନ୍ତୁ ୰ଗୋପବନ୍ଧୁ ଦାସ ତାଙ୍କ ପୂର୍ବରୁ କଠୋପନିଷଦ୍ ଅବଲମ୍ବନରେ ନଚିକେତା ଉପାଖ୍ୟାନ ପଦ୍ୟାକାରରେ ରଚନା କରିଥିଲେ । ଏହାର ବହୁ ପୂର୍ବରୁ ୰ ବ୍ୟାସକବି ଫକୀରମୋହନ ସେନାପତି ଛାନ୍ଦୋଗ୍ୟ ଉପନିଷଦ୍ ପଦ୍ୟାକାରରେ ଲେଖିଥିଲେ । ଏହି ଗ୍ରନ୍ଥସବୁ ଆଚାର୍ଯ୍ୟଙ୍କ ଉପରେ ଅଖଣ୍ଡ ପ୍ରଭାବ ବିସ୍ତାର କରିଥିବ ।

ସେ ଜାଣିଥିଲେ,—ଜ୍ଞାନ ଓ କର୍ମର ଆଶ୍ଚର୍ଯ୍ୟ ସମନ୍ୱୟ ଉପନିଷଦ୍ ଯୁଗର ଆଦର୍ଶ ଥିଲା । ଉପନିଷଦ୍‌ର ମନ୍ତ୍ରସବୁ କେତେବେଳେ ଅରଣ୍ୟର ସନ୍ନ୍ୟାସୀମାନେ ରଚନା କରିଅଛନ୍ତି, କେତେବେଳେ ଏହି ବ୍ରହ୍ମ ବିଦ୍ୟାର

ପ୍ରବର୍ତ୍ତକ ହେଉଛନ୍ତି ରାଜା ଓ ରାଜର୍ଷି ଗଣ କମ୍ବା କେତେବେଳେ ବିଦୁଷୀ ନାରୀ । ଯଥା :—ଯାଜ୍ଞବଲ୍କ୍ୟ ଋଷି ଏବଂ ତାଙ୍କର ପତ୍ନୀ ମୈତ୍ରେୟୀ ଓ ଗାର୍ଗୀ । ଆଚାର୍ଯ୍ୟେ ମଧ୍ୟ ଜାଣିଥିଲେ, ବେଦ ସାଧାରଣତଃ ଦୁଇଭାଗରେ ବିଭକ୍ତ । ଯଥା :—ସଂହିତା, ବ୍ରାହ୍ମଣ । ଯେଉଁ ଭାଗରେ ବେଦର ମନ୍ତ୍ର ସମୂହ ସଂହିତ ଅର୍ଥାତ୍ ସଂଗୃହୀତ ହୋଇଅଛି, ତାହାର ନାମ ସଂହିତା । ଏହି ସଂହିତା ପୁଣି ୪ ଭାଗରେ ବିଭକ୍ତ । ଯଥା :—ଋକ୍, ସାମ, ଯଜୁଃ ଓ ଅଥର୍ବ । ବ୍ରହ୍ମ ଶବ୍ଦର ଏକ ଅର୍ଥ ହେଉଛି ବେଦ । ଏହି ବ୍ରହ୍ମ ଅର୍ଥାତ୍ ସଂହିତା ବେଦ ବା ସଂହିତା ମନ୍ତ୍ର ଯେଉଁ ଭାଗରେ ବ୍ୟାଖ୍ୟା କରାହୋଇଅଛି ତାହାର ନାମ ବ୍ରାହ୍ମଣ । ବ୍ରାହ୍ମଣର ଅନ୍ତ୍ୟଭାଗ ଓ ସାରଭାଗ ଉପନିଷଦ୍ । ବ୍ରାହ୍ମଣମାନଙ୍କରେ ଯାଗ ଯଜ୍ଞ ଓ କ୍ରିୟା କାଣ୍ଡମାନଙ୍କର ଉଲ୍ଲେଖ କରି ସଂହିତା ମନ୍ତ୍ରର ବ୍ୟାଖ୍ୟା କରାହୋଇଅଛି । କିନ୍ତୁ ଉପନିଷଦ ସମୂହରେ ବିଶୁଦ୍ଧ ବ୍ରହ୍ମ ବିଦ୍ୟା ବା ଆତ୍ମ ବିଦ୍ୟା ଓ ଯୋଗ ତପସ୍ୟା ଦ୍ୱାରା ଏହି ବିଷୟକ କର୍ତ୍ତବ୍ୟର ସ୍ପଷ୍ଟ ନିର୍ଦ୍ଦେଶ ଭିନ୍ନ ଆଉ କିଛି ନାହିଁ । ବେଦର ଅନ୍ତ ବେଦାନ୍ତ । ଅର୍ଥାତ୍ ଯେଉଁଠାରେ ବେଦର ଶେଷସୀମା । ବେଦକୁ ଅନ୍ୟ ଦୁଇଭାଗରେ ବିଭକ୍ତ କରାହୁଏ,—କର୍ମ କାଣ୍ଡ ଓ ଜ୍ଞାନ କାଣ୍ଡ । ଏହି ଜ୍ଞାନ କାଣ୍ଡ ହିଁ ଉପନିଷଦ୍ । ତେଣୁ ସାଧାରଣତଃ ପ୍ରତ୍ୟେକ ସଂହିତାର ବ୍ରାହ୍ମଣ, ପ୍ରତ୍ୟେକ ବ୍ରାହ୍ମଣର ଆରଣ୍ୟକ ଏବଂ ପ୍ରତ୍ୟେକ ଆରଣ୍ୟକର ହିଁ ଉପନିଷଦ୍ ଅଛି । ସଂହିତା, ବ୍ରାହ୍ମଣ, ଆରଣ୍ୟକ ଓ ଉପନିଷଦ୍; ଏହି ସକଳକୁ କେନ୍ଦ୍ରକରି ସମଗ୍ର ବେଦ ରଚନା କରାଯାଇଅଛି । ଏହି ଭାବରେ ଉପନିଷଦ୍ ଶାସ୍ତ୍ର ବେଦର ଅନ୍ତ୍ୟ ବା ଶେଷ ଭାଗ ବୋଲି ମୂଳତଃ ବେଦାନ୍ତ ନାମରେ ପରିଚିତ ।

କଥିତ ଅଛି, ଏ ପର୍ଯ୍ୟନ୍ତ ଶତାଧିକ ଉପନିଷଦ୍ ଗ୍ରନ୍ଥ ପଣ୍ଡିତମାନେ ଆବିଷ୍କାର କରିଅଛନ୍ତି । ସେଥିମଧ୍ୟରୁ ୧୧ ଖଣ୍ଡି ଉପନିଷଦ୍ ଶ୍ରୀମତ୍ ଶଙ୍କରାଚାର୍ଯ୍ୟ ବ୍ୟାଖ୍ୟା କରିଅଛନ୍ତି । ଆଚାର୍ଯ୍ୟଙ୍କର ଇଚ୍ଛାଥିଲା ସବୁଗୁଡ଼ିକ ଉପନିଷଦ୍‌ର ଓଡ଼ିଆ ଅନୁବାଦ କରିବା । କିନ୍ତୁ ନାନା ସମାଜ କଲ୍ୟାଣକର କାର୍ଯ୍ୟକଳାପରେ ବ୍ୟସ୍ତ ଥାଇ ସେ ତାହା କରିପାରି ନ ଥିବାରୁ ଦୁଃଖପ୍ରକାଶ କରୁଥିଲେ । ଏହି ଉପନିଷଦ୍‌ମାନଙ୍କର ପ୍ରକାଶକ ଶ୍ରୀ ଅନନ୍ତ ମିଶ୍ର

ଲେଖିଅଛନ୍ତି, 'ପୁଣ୍ୟଶ୍ଳୋକ ଆଚାର୍ଯ୍ୟ ହରିହର ନିଷ୍କଳଙ୍କ ଜୀବନଯାପନ କରୁଥିଲେ । ତାଙ୍କର ଏହି ଅନୁବାଦଗୁଡ଼ିକ ଓଡ଼ିଆ ସାହିତ୍ୟ ଭଣ୍ଡାରକୁ ଅମୂଲ୍ୟ ରତ୍ନପରି ପରିପୁଷ୍ଟ କରିବ ବୋଲି ଆଶାକରୁ ।

ଆଚାର୍ଯ୍ୟ ହରିହର ଯେପରି ସରଳ ସୁନ୍ଦର ଓ ପ୍ରାଞ୍ଜଳ ଭାବରେ ଉପନିଷଦର ମନ୍ତ୍ରଗୁଡ଼ିକ ସଂସ୍କୃତରେ ବ୍ୟାଖ୍ୟା କରିଅଛନ୍ତି ଓ ଓଡ଼ିଆ ଭାଷାରେ ଅନୁବାଦ କରିଅଛନ୍ତି ; ତାହା ଉତ୍କଳ ସାହିତ୍ୟରେ ଅଭିନବ, ଅନବଦ୍ୟ ଓ ଅନୁପମ । ସେହି ବ୍ୟାଖ୍ୟାମାନଙ୍କରୁ ଏଠାରେ କେତେକ ଦୃଷ୍ଟାନ୍ତ ଦିଆଗଲେ ଆମ୍ଭମାନଙ୍କ କଥାର ସାରବତ୍ତା ପ୍ରତିପାଦିତ ହେବ ।

"ଓଁ ପୂର୍ଣ୍ଣମଦଃ ପୂର୍ଣ୍ଣମିଦଂ ପୂର୍ଣ୍ଣାତ୍ ପୂର୍ଣ୍ଣମୁଦଚ୍ୟତେ ।
ପୂର୍ଣ୍ଣସ୍ୟ ପୂର୍ଣ୍ଣମାଦାୟ ପୂର୍ଣ୍ଣମେବାବଶିଷ୍ୟତେ ।"
ଓଁ ଶାନ୍ତିଃ ଶାନ୍ତିଃ ଶାନ୍ତିଃ । ହରିଃ ଓଁ ତତ୍ସତ୍ ।

ସେହି ବହିର୍ଜଗତ (ଯାହାସବୁ ଇନ୍ଦ୍ରିୟର ଅଗୋଚର) ତାହା ବ୍ରହ୍ମରେ ପରିପୂର୍ଣ୍ଣ; ଏଇ ଅନ୍ତର୍ଜଗତ୍ (ଯାହାସବୁ ଇନ୍ଦ୍ରିୟ ଗୋଚର), ତାହା ମଧ୍ୟ ବ୍ରହ୍ମରେ ପୂର୍ଣ୍ଣ, ଆଉ ଏଇସବୁ ଜଗତ ପରିପୂର୍ଣ୍ଣ ଅଖଣ୍ଡ ବ୍ରହ୍ମରୁ ଅଭିବ୍ୟକ୍ତ (ପ୍ରକାଶିତ); ପୂର୍ଣ୍ଣସ୍ୱଭାବ ବ୍ରହ୍ମରୁ ପୂର୍ଣ୍ଣ କାଢ଼ିନେଲେ ମଧ୍ୟ ସେହି ପୂର୍ଣ୍ଣ ପୁଣି ରହେ, ଅର୍ଥାତ୍ ବ୍ରହ୍ମର ପୂର୍ଣ୍ଣତା ଜଗଦ୍‌ବ୍ୟାପ୍ତ ହେଲେ ସୁଦ୍ଧା ସେହି ବ୍ରହ୍ମର ପୂର୍ଣ୍ଣତାର ହାନି ହୁଏ ନାହିଁ ।

"ଓଁ ଈଶାବାସ୍ୟମିଦଂ ସର୍ବଂ ଯତ୍କିଂ ଚ ଜଗତ୍ୟାଂ ଜଗତ୍ ।
ତେନ ତ୍ୟକ୍ତେନ ଭୁଞ୍ଜୀଥା ମା ଗୃଧଃ କସ୍ୟସ୍ୱିଦ୍ଧନମ୍ ।"

ଏ ସଂସାରରେ ଚରାଚର ଯାହା କିଛି ଅଛି, ଏହା ସବୁ ଈଶ୍ୱରଙ୍କ ଦ୍ୱାରା ବ୍ୟାପ୍ତ ବୋଲି ଜାଣ । ତେଣୁ ନିର୍ଲିପ୍ତ ଭାବରେ ନିଜକୁ ପାଳନ କର (ବା ନିର୍ଲିପ୍ତ ଭାବରେ ସବୁ କାମକର), କାହାରି ଧନ ବା ବିଷୟ ପ୍ରତି ଲୋଭ ବା ଅଭିଳାଷ ରଖ ନାହିଁ ।

ଏକମାତ୍ର ବ୍ରହ୍ମ ହିଁ ସତ୍ୟ, ଜଗତ ମିଥ୍ୟା; ମିଥ୍ୟା ସାଧନ ପ୍ରତି ଲୋଭ ଅନୁଚିତ । ମିଥ୍ୟା ବିଷୟ ତ୍ୟାଗପୂର୍ବକ ନିର୍ଲିପ୍ତ ଭାବରେ ଆତ୍ମାର ଯଥାର୍ଥ ସ୍ୱରୂପ ଉପଲବ୍ଧି କରି ସକଳ କାର୍ଯ୍ୟ ସଂପାଦନ କର ।

ସମଗ୍ର ଉପନିଷଦ୍ ମଧ୍ୟରେ କଠୋପନିଷଦ ହେଉଛି ସର୍ବଶ୍ରେଷ୍ଠ । ଏହାର ସମୁଜ୍ଜ୍ୱଳ ଚରିତ୍ର ହେଉଛି ନଚିକେତା । ନଚିକେତା ହେଉଛି ବାଜଶ୍ରବା ଋଷିଙ୍କର ପୁତ୍ର । ବାଜଶ୍ରବସଙ୍କର ସୁକୁମାରମତି ଅଳ୍ପବୟସ୍କ ପୁତ୍ର । ନଚିକେତା ଦେଖିଲେ ତାଙ୍କର ପିତା ବାଜଶ୍ରବସ ଗୋଟିଏ ଯଜ୍ଞ ଅନୁଷ୍ଠାନ କରୁଅଛନ୍ତି । ସେ ଯଜ୍ଞର ନାମ ବିଶ୍ୱଜିତ୍ ଯଜ୍ଞ । ଏହି ଯଜ୍ଞରେ ବାଜଶ୍ରବସ ତାଙ୍କର ଯାହାକିଛି ଅଛି ସବୁ ବ୍ରାହ୍ମଣମାନଙ୍କୁ ସମର୍ପଣ କରିଦେବେ । ନଚିକେତା ଦେଖିଲେ ତାଙ୍କ ପିତାଙ୍କ ଆଶ୍ରମରେ କେତୋଟି ବୃଦ୍ଧା ଧେନୁ ବ୍ୟତୀତ ଆଉ କେହି ନାହାନ୍ତି । ସେ ତେଣୁ ଆଶ୍ଚର୍ଯ୍ୟ ହୋଇ ପିତାଙ୍କୁ ପଚାରିଲେ, 'ପିତଃ, ମୋତେ କାହାକୁ ଦକ୍ଷିଣା ସ୍ୱରୂପ ଦେବେ ।' ପିତା ବିରକ୍ତିରେ କହିଲେ, 'ତତେ ମୁଁ ଯମକୁ ଦେବି ।' ସେକାଳରେ କଥା ଓ କାର୍ଯ୍ୟ ମଧ୍ୟରେ କୌଣସି ପାର୍ଥକ୍ୟ ନ ଥିଲା । ନଚିକେତା ୩ ଦିନ ମଧ୍ୟରେ ଯାଇ ଯମଲୋକରେ ମୃତ୍ୟୁ ଦେବତାଙ୍କ ସମ୍ମୁଖରେ ଠିଆ ହେଲେ । ମୃତ୍ୟୁଦେବତା ନଚିକେତାଙ୍କୁ କହିଲେ, 'ତୁମେ କିଏ ? ମୋ ଠାରୁ କି ବର ପ୍ରାର୍ଥନା କର ? ତୁମେ ଯାହା ମାଗିବ ମୁଁ ତୁମକୁ ତାହା ଦେବି । ନଚିକେତା ଯମଙ୍କୁ କହିଲେ, 'ମୋର ଧନ, ଜନ, ନାରୀ କମ୍ବା 'ସ୍ୱର୍ଗ'ର ପ୍ରୟୋଜନ ନାହିଁ । ଜୀବନରେ ଦୁଇଟି କଥା ଶ୍ରେଷ୍ଠ । ଯଥା :—ଶ୍ରେୟ ଓ ପ୍ରେୟ । ମୁଁ ପ୍ରେୟ ଚାହେଁ ନାହିଁ । ଯାହା ଆପାତ ରମଣୀୟ ଏବଂ ଅସ୍ଥାୟୀ ତାହା ପ୍ରେୟ । ଯାହା ମନୁଷ୍ୟକୁ ଆତ୍ମତତ୍ତ୍ୱ ବିଷୟରେ ପ୍ରତ୍ୟୟ ଆଣିଦିଏ ତାହା ହିଁ ଶ୍ରେୟ । ମନୁଷ୍ୟ ଧନରେ ତୃପ୍ତ ହୋଇ ନ ପାରେ । 'ଆପଣଙ୍କୁ ଯେତେବେଳେ ଦେଖିଲଣି, ଧନ ତ ନିଶ୍ଚୟ ମିଳିବ; ଆପଣ ଯେତେଦିନ ଯମପଦରେ ରହିଥିବେ, ଆମ୍ଭେମାନେ ସେତେଦିନ ନିଶ୍ଚୟ ବଞ୍ଚି ରହିବୁ; କିନ୍ତୁ ମୋର ସେଇ ପ୍ରଥମ ବର ପ୍ରାର୍ଥନୀୟ ।' —ଆତ୍ମତତ୍ତ୍ୱ ।



# ଭଲ ମଣିଷ ହୁଅ

## ( ଆଗ୍ରୁର୍ଯ୍ୟଙ୍କର ଜୀବନ୍ନ ଦର୍ଶନ )

## ( ୯ )

ଆଗୁର୍ଯ୍ୟ ହରିହର ଦାଶ ଜଣେ ନିର୍ଦ୍ଦିଷ୍ଟ ଦାର୍ଶନିକ ନ ଥିଲେ । ନୀଳକଣ୍ଠ ଓ କୃପାସିନ୍ଧୁଙ୍କ ପରି ଦର୍ଶନ ଶାସ୍ତ୍ରରେ ତାଙ୍କର ପ୍ରବେଶ ନ ଥିଲା । ତାଙ୍କର ଯାହା କିଛି ଜୀବନର ଦାର୍ଶନିକ ସାମଗ୍ରୀ ତାହାସବୁ ସାବଧାନତାର ସହିତ ସଂଗ୍ରହ କରିବାକୁ ହେବ, ତାଙ୍କର ୯୨ ବର୍ଷ ବ୍ୟାପୀ ଦୀର୍ଘ ଜୀବନରୁ । ଜୀବନର ଶେଷାବସ୍ଥାରେ ତାଙ୍କୁ ଅନେକ ସଭା ସମିତିକୁ ନିମନ୍ତ୍ରଣ ଆସିଛି, ଛାତ୍ରମାନଙ୍କୁ ଉଦ୍‌ବୋଧନ ଦେବା ନିମନ୍ତେ । କିନ୍ତୁ ସେ କେବଳ ଏତିକି କହି ନୀରବ ହୁଅନ୍ତି, 'ଛାତ୍ରଗଣ, ମୁଁ ତୁମମାନଙ୍କୁ ଆଶୀର୍ବାଦ କରୁଛି, ତୁମ୍ଭେମାନେ ଦୀର୍ଘଜୀବୀ ହୁଅ । ଭଲକରି ପାଠ ପଢ଼ି ଦେଶର ସେବାକର । 'ଭଲ ମଣିଷ ହୁଅ' । ଏତିକି ମୁଁ ତୁମମାନଙ୍କ ସକାଶେ ଭଗବାନଙ୍କଠାରେ ମୋର ଏକମାତ୍ର ପ୍ରାର୍ଥନା ।' ସେ ଆର୍ଯ୍ୟ ଋଷିମାନଙ୍କ ପରି ପ୍ରତ୍ୟହ ସକାଳ ଓ ସନ୍ଧ୍ୟାରେ ପ୍ରାର୍ଥନା କରି କହନ୍ତି,—

"ସର୍ବେ ସୁଖିନୋ ଭବନ୍ତୁ,
ସର୍ବେ ସନ୍ତୁ ନିରାମୟାଃ
ସର୍ବେ ଭଦ୍ରାଣି ପଶ୍ୟନ୍ତୁ,
ମା କଶ୍ଚିତ୍ ଦୁଃଖଭାକ୍ ଭବେତ୍ ।"

ଏହାହିଁ ତାଙ୍କ ଜୀବନ ଦର୍ଶନର ପ୍ରଥମ ସୋପାନ । ଏଥି ସକାଶେ ସେ ଜଣେ ଯୁଗପୁରୁଷ ଥିଲେ ଏବଂ ଗୋଟିଏ ଶତାବ୍ଦୀର ସୁଦୃଢ଼ସ୍ତମ୍ଭ ରୂପେ ସେ ଓଡ଼ିଶାରେ ଘରେ ଘରେ ପରିଚିତ । ତାଙ୍କ ସମ୍ବନ୍ଧରେ ଶ୍ରୀ ହରିହରାନନ୍ଦ କର ଉଲ୍ଲେଖ କରିଅଛନ୍ତି, 'ଆଗୁର୍ଯ୍ୟ' କହିଲେ,—କେବଳ ବ୍ରାହ୍ମଣ ଜାତିର ସଂଜ୍ଞା ବୁଝାଏ ନାହିଁ । ଏହି ଶବ୍ଦର ଅଭିଧାନିକ ଅର୍ଥ 'ଶିକ୍ଷାଗୁରୁ', 'ପୁରୋଧା' । ସେ ସମ୍ମାନନୀୟ, ତେଣୁ ସେ ପ୍ରଥମେ ବନ୍ଦ୍ୟ ଓ

ବରଣୀୟ । ସେଥିପାଇଁ ଯେ କୌଣସି ଶୁଭ କାର୍ଯ୍ୟ ବା ଶୁଦ୍ଧି କାର୍ଯ୍ୟରେ 'ଆଚାର୍ଯ୍ୟବରଣ' ବିଧାନ ରହିଛି ଓ ତାହା ଅଦ୍ୟାବଧି ଆମ ସମାଜରେ ଚଳି ଆସୁଛି ।

ଆଚାର୍ଯ୍ୟ ହରିହର ଦାଶ ଏଇଭଳି ଜଣେ ପୂଜ୍ୟ ଓ ସମ୍ମାନିତ ବ୍ୟକ୍ତି ଆମ ସମାଜରେ । ସେ ଯଦିଓ ବ୍ରାହ୍ମଣ; ଜାତି, କୁଳ-ଗୋତ୍ର ବା ଧର୍ମ ଓ ବର୍ଣ୍ଣ ବିଚାରରେ ନୁହେଁ । ମଣିଷର କୃତ ଓ କୃତିତ୍ୱ, ତା'ର ଗୁଣଗରିମା, ତା'ର ସାଧନା, ସୌରଭ, ତା'ର ପ୍ରତିଭା ଓ ପୌରୁଷହିଁ ତାକୁ ବଡ଼ କରିଥାଏ ଏବଂ ପୂଜ୍ୟ ଓ ସମ୍ମାନିତ କରିଥାଏ । ଯେହେତୁ ସେ ସାଧାରଣ ନୁହେଁ, ଅସାଧାରଣ ବା ଅନନ୍ୟ-ସାଧାରଣ ଏବଂ ଅନ୍ୟର ଅନୁକରଣୀୟ ।

ସେ ଥିଲେ ଘର ସନ୍ୟାସୀ । ତାଙ୍କର ନିଜର ସମ୍ପତ୍ତି ବୋଲି କିଛି ନ ଥିଲା । ସେ ଥିଲେ ଅଜାତଶତ୍ରୁ । ରାଜନୀତିର କୂଟ କପଟତା ତାଙ୍କୁ ଜଣା ନ ଥିଲା । ତେଣୁ ସେ ଜୀବନରେ ବିଧାନ ସଭାର ସଭ୍ୟ ନିମନ୍ତେ କଦାପି ଭୋଟ ପ୍ରାର୍ଥୀ ହୋଇ ନାହାଁନ୍ତି । ସେ ଥିଲେ ଦେଶାତ୍ମବୋଧ ଓ ଜନସେବାର ମୂର୍ତ୍ତିମନ୍ତ ପ୍ରତୀକ । ତାଙ୍କ ସମ୍ବନ୍ଧରେ ଶ୍ରୀ ଚନ୍ଦ୍ରଶେଖର ମହାପାତ୍ର ଉଲ୍ଲେଖ କରିଅଛନ୍ତି, 'ନିଃସ୍ୱାର୍ଥ ଜନସେବା ପାରମ୍ପରିକ ମାନବିକତା ଓ ଭାରତୀୟ ସଂସ୍କୃତିର ପ୍ରତୀକ ଏବଂ ଜଣେ ବିଶ୍ୱସ୍ତ ସାର୍ଥୀଭାବେ ଆଚାର୍ଯ୍ୟ ହରିହର କେବଳ ଓଡ଼ିଶାର ପୁରପଲ୍ଲୀରେ ନୁହେଁ, ସାରା ଭାରତରେ ପୂଜ୍ୟ ଏବଂ ସମ୍ମାନିତ । ସରକାରୀ ଚାକିରୀ ନ କରି ଆଜୀବନ ଜନସେବା ପାଇଁ ସେ ବିଂଶ ଶତାବ୍ଦୀର ପ୍ରଥମ ଭାଗରେ ପଣ୍ଡିତ ଗୋପବନ୍ଧୁ, ପଣ୍ଡିତ ନୀଳକଣ୍ଠ ଏବଂ ପ୍ରଚାରକ ଅନନ୍ତ ମିଶ୍ରଙ୍କ ସହିତ ଯୁବାବସ୍ଥାରେ ଶୁଆଣ୍ଡୋ ଗ୍ରାମରେ ଏକ ନିଃଶବ୍ଦ ନିଶୀଥରେ ଯେଉଁ ଶପଥ ଗ୍ରହଣ କରିଥିଲେ ସେଥିରେ ଆପଣାର ଦୀର୍ଘ ଜୀବନରେ ସେ ଧ୍ରୁବ ପରି ଅଟଳ ରହିଥିଲେ; ମାତ୍ର ସେତେବେଳେ ଦେଶରେ ଯାହା ଅବସ୍ଥା ଥିଲା ତାହା ଅପେକ୍ଷା ଦେଶକୁ ଏବଂ ଜନସାଧାରଣଙ୍କୁ ଅଧିକ ଉନ୍ନତ ଦେଖି-ପାରିବା ପାଇଁ ତାଙ୍କର ସେହି ଶପଥରେ ଯେଉଁ ଅଭିଳାଷ ପ୍ରକାଶ

ପାଇଥିଲା, ସାରାଜୀବନର ସମସ୍ତ ଶକ୍ତି ଦେଇ ତାହା କାର୍ଯ୍ୟକାରୀ କରିବା ପାଇଁ ସେ ଅବିଚଳିତଭାବେ ଏକାଗ୍ର ସାଧନା କରିଅଛନ୍ତି ।'

ଆଚାର୍ଯ୍ୟ ଥିଲେ ସତ୍ୟବାଦୀ ଯୁଗର ଶେଷ ଦୀପ ଶିଖା । ତାଙ୍କର ମୃତ୍ୟୁବେଳକୁ ଦେଶ କିପରି ଉନ୍ନତି ଲାଭ କରିଥିଲା, ଲୋକମାନେ ପରସ୍ପର ମଧ୍ୟରେ କିପରି ସହୃଦୟତା ସ୍ଥାପନ କରିଥିଲେ, ଲୋକଙ୍କ ମଧ୍ୟରେ କିପରି ସାନ ବଡ଼ର ପ୍ରଭେଦ ନ ଥିଲା, ଲୋକମାନେ କିପରି ସତ୍ୟର ମାର୍ଗ ଅନୁସନ୍ଧାନ କରୁଥିଲେ, ତାହା ହିଁ ଥିଲା ଆଚାର୍ଯ୍ୟଙ୍କ ସମୟରେ ଦେଶର ଉନ୍ନତତର ଅବସ୍ଥା । ଆଚାର୍ଯ୍ୟ ହରିହର ଥିଲେ ସମାଜରେ ଦରିଦ୍ର ଜନତାର ଏକମାତ୍ର ସେବକ । ଗୋପବନ୍ଧୁଙ୍କ ପରେ ଏପରି ନିଃସ୍ୱାର୍ଥ ଜନସେବାର ନିଦର୍ଶନ ଆଉ ଓଡ଼ିଶାରେ କେହି ଦେଖାଇ ନାହାଁନ୍ତି । ତାଙ୍କର ନିରଳସ ଓ ନିରାଡ଼ମ୍ବର ଜୀବନଟି କେବଳ କର୍ମମୟ ଥିଲା । ଦରିଦ୍ର ସେବାଠାରୁ ରୋଗୀସେବା ଓ କୁଷ୍ଠ ରୋଗୀଙ୍କର ପରିଚର୍ଯ୍ୟା ନିମନ୍ତେ ସେ ସର୍ବଦା ତତ୍ପର ଥିଲେ । ସର୍ବୋଦୟ ଯାତ୍ରାରେ ସେ ଆଦିବାସୀ ଗ୍ରାମମାନଙ୍କରେ ବୁଲିବୁଲି ଆଦିବାସୀ ନିରକ୍ଷର ଲୋକମାନଙ୍କୁ ଯେପରି ଆପଣାର କରିଥିଲେ ତାହା କଳ୍ପନା କରିବା ଆମମାନଙ୍କ ପକ୍ଷରେ କଷ୍ଟକର ବ୍ୟାପାର । ସେ ଏକାନ୍ତ ଭାବରେ ବିଶ୍ୱାସ କରୁଥିଲେ, 'ଦରିଦ୍ର ଜନତାର ସେବା ହେଉଛି ଶ୍ରେଷ୍ଠ ଭଗବତ୍ ସେବା । ଏହି ସେବା ଛଡ଼ା ମନୁଷ୍ୟର ଅନ୍ୟଗତି ନାହିଁ । ସେ ଯେପରି ଥିଲେ ଜଣେ ସଂସ୍କାରକ, ସେହିପରି ଭାବରେ ଥିଲେ ଜଣେ ଉଗ୍ରପନ୍ଥୀ ବିପ୍ଳବୀ । ସେ ନିଜ ମନରୁ ଅହଙ୍କାର ଦୂର କରିବା ନିମନ୍ତେ ଅତି ଅଳ୍ପ ବୟସରୁ ବ୍ରାହ୍ମଣର 'ଆତ୍ମବଡ଼ିମା'ର ପରିଚାୟକ ଯଜ୍ଞୋପବୀତକୁ ଛିଣ୍ଡାଇ ପକାଇ-ଥିଲେ ଓ ବ୍ରାହ୍ମଣମାନଙ୍କୁ ବଳରେ ହଳକରିବା ନିମନ୍ତେ ନିଜେ ପଣ୍ଡିତ କୃପାସିନ୍ଧୁ ହୋତାଙ୍କ ସହିତ ଶିକ୍ଷା ଦେଇଥିଲେ । ଏହି ସବୁ କଥାର ସୂଚନା ପୂର୍ବରୁ ଦିଆଯାଇଅଛି । ନିଜର ଭୋଗବିଳାସ ହୋଇ ତାଙ୍କର କିଛି ନ ଥିଲା । ସେ ନିଜେ ସାଧାରଣ ମଣିଷଙ୍କ ପରି ଚଳୁଥିଲେ । ପିନ୍ଧିବା ଭିତରେ ତାଙ୍କର ଗୋଟିଏ ଖଦଡ଼ ଧୋତି ଓ ଚଦ୍ଦର ସଙ୍ଗେ

ଗୋଟିଏ ପାଚୁଡ଼ା, ଖାଇବା ନିମନ୍ତେ ଯେଉଁଠାରେ ଯାହା ମିଳିଲା, ସେ ତାହା ଆନନ୍ଦ ଓ ତୃପ୍ତିର ସହିତ ଭୋଜନ କରୁଥିଲେ ।'

ତାଙ୍କ ଜୀବନ-ଦର୍ଶନ ସମ୍ପର୍କରେ ଶ୍ରୀ ବିନୋଦ କାନୁନ୍‌ଗୋ ଲେଖିଅଛନ୍ତି, 'ମହାତ୍ମା ଗାନ୍ଧୀଙ୍କର ଚିନ୍ତାଧାରା ତାଙ୍କ ଜୀବନ ଉପରେ ଗଭୀର ପ୍ରଭାବ ପକାଇଥିଲା ସତ, କିନ୍ତୁ ଦେଶପ୍ରେମ ବା ସ୍ୱଦେଶୀଭାବରେ ଭାରତରେ ଗାନ୍ଧୀଯୁଗ ଆରମ୍ଭର ବହୁ ପୂର୍ବରୁ ଦୀକ୍ଷିତ ହୋଇ ସାରିଥିଲେ । ବଙ୍ଗଭଙ୍ଗ ଆନ୍ଦୋଳନବେଳେ ଭାରତର ପୂର୍ବ ଅଞ୍ଚଳରେ ଯାହାସବୁ ଘଟିଲା ତା'ର ପ୍ରଭାବ ଓଡ଼ିଶାର ଶିକ୍ଷିତ ଲୋକଙ୍କ ଉପରେ କିଛି କିଛି ପଡ଼ିଥିଲା । ଶ୍ରୀ ଅରବିନ୍ଦ ଘୋଷଙ୍କ ନେତୃତ୍ୱରେ ବଙ୍ଗର ସ୍ୱଦେଶ ପ୍ରେମୀ ଯୁବକ ବିପ୍ଳବୀମାନେ ସ୍ୱଦେଶୀ ଆନ୍ଦୋଳନ ଆରମ୍ଭ କରିଥିଲେ । ମୁଜାଫର-ପୁର ଠାରେ ବିପ୍ଳବୀମାନଙ୍କୁ ସଂହାସବାଦ ଅଭିଯୋଗରେ କଠୋର ଦଣ୍ଡ ଦେବାରୁ ଜିଲ୍ଲା ଜର୍ଜ କିଙ୍ଗସ୍ ଫୋର୍ଡ଼ଙ୍କ ଉପରେ ସମସ୍ତଙ୍କର ରାଗଥାଏ । ଥରେ ତାଙ୍କ ଉପରେ ବୋମା ମାଡ଼ ହେଲା । ବିପ୍ଳବୀ ଖୁଦିରାମ ଏହିସବୁ ଘଟଣାରେ ସଂପୃକ୍ତ ଥିଲେ । ସେ କଟକ ଚାଲି ଆସି ବ୍ରଜସୁନ୍ଦର ଦାସଙ୍କ ଘରେ ଆଶ୍ରୟ ନେଇ ଓଡ଼ିଶାର ଯୁବକମାନଙ୍କୁ ସ୍ୱଦେଶୀ ଆନ୍ଦୋଳନରେ ଅନୁପ୍ରାଣିତ ହେବା ପାଇଁ ଉଦ୍‌ବୋଧନ ଦେଇଥିଲେ । ବାଡ଼ିଖେଳ, କୁସ୍ତି-କସରତ, ଲାଠିଖେଳ ଶିକ୍ଷା ଦିଆଯିବ ତା'ର ଯୋଜନା ପ୍ରସ୍ତୁତ କରିଥିଲେ । ଯେଉଁମାନଙ୍କ ସହିତ ସେ ଗୁପ୍ତ ପରାମର୍ଶ କରିଥିଲେ, ସେମାନଙ୍କ ଭିତରେ ଥିଲେ ଗୋପବନ୍ଧୁ, ହରିହର, ନୀଳକଣ୍ଠ, ଜଗନ୍ନାଥ ଓ ବାସୁଦେବ ମହାପାତ୍ର । ବଙ୍ଗଳାର ବିପ୍ଳବୀ ଶିକ୍ଷକ ଶଶିଭୂଷଣ ଚୌଧୁରୀ ସେ ଯୁଗରେ ଭୁବନେଶ୍ୱରରେ ଆତ୍ମଗୋପନ କରି ରହିଥାନ୍ତି । ହରିହର ତାଙ୍କ ସମ୍ପର୍କରେ ମଧ୍ୟ ଆସିଥିଲେ ।'

ଆଚାର୍ଯ୍ୟ ମହାଶୟଙ୍କର ଯେଉଁ ମତ ଓ କ୍ରିୟାରେ ଦୃଢ଼ ବିଶ୍ୱାସ ଥିଲା ସେ ତାହାକୁ ସହଜରେ ଛାଡ଼ୁ ନ ଥିଲେ । ମହାତ୍ମା ଗାନ୍ଧୀଙ୍କର ଅସହଯୋଗ ଆନ୍ଦୋଳନରେ ତାଙ୍କର ଅଟଳ ଆତ୍ମପ୍ରତ୍ୟୟ ଥିଲା । ସେଥିପାଇଁ ପ୍ରଥମେ ପ୍ରଥମେ ସେ ଛାତ୍ରମାନଙ୍କୁ ଇଂରାଜୀ ଶିକ୍ଷା ସହିତ ସମସ୍ତ

ସଂସର୍ଗ ବର୍ଜନ କରିବାକୁ ଉପଦେଶ ଦେଉଥିଲେ । କିନ୍ତୁ ଯେତେବେଳେ ଏହି ଆନ୍ଦୋଳନ କ୍ରମେ ଶିଥିଳ ହୋଇ ଆସିଲା ସେତେବେଳେ ସେ କୌଣସି କୌଣସି ଛାତ୍ରଙ୍କୁ ପଚାରିଲେ, 'ଆରେ, ତୁମେମାନେ ପ୍ରଥମେ ପାଠ ସାଠ ପଢ଼ି ମଣିଷ ହୁଅ । ମଣିଷଙ୍କ ଭଳି ଚଳ । ମଣିଷକୁ ଭଲପାଅ । ମଣିଷ ସେବାରେ ମନପ୍ରାଣ ଦିଅ, ତେବେ ଯାଇ ଏହି ଆନ୍ଦୋଳନ ଦୃଢ଼ତର ହେବ । ଭାରତ ଅଳ୍ପଦିନ ମଧ୍ୟରେ ସ୍ୱରାଜ୍ୟ ପାଇବ, ଏପରି ଅଧାପନ୍ତରିଆ ଅବସ୍ଥାରେ ରହିବାଟା ତୁମ ପକ୍ଷରେ ମୁଁ ଉଚିତ-ବୋଲି ମନେକରୁ ନାହିଁ ।'

ଅସ୍ପୃଶ୍ୟତା ବର୍ଜନ ତାଙ୍କ ଜୀବନର ଅନ୍ୟଏକ ମନ୍ତ୍ର ଥିଲା । ଡଃ ଶ୍ରୀରାମଚନ୍ଦ୍ର ଦାଶ ତାଙ୍କ ସମ୍ବନ୍ଧରେ ଉଲ୍ଲେଖ କରି ଅଛନ୍ତି, 'ତୁଳସୀ ଦୁଇ ପତ୍ରରୁ ବାସିଲା' ପରି ହରିହର ଯେ ଜଣେ ସମାଜ ସେବକ ହେବେ ଏହା ତାଙ୍କ ବାଲ୍ୟ ଜୀବନରୁ ପ୍ରକାଶିତ ହୋଇଥିଲା । ପୁରୀ ଜିଲ୍ଲାସ୍କୁଲରେ ଗୋପବନ୍ଧୁ ଓ ହରିହର ସମସାମୟିକ ଥିଲେ । ସେତେବେଳେ ପୁରୀରେ ପ୍ରବଳ ହଇଜା ହେଉଥାଏ । ଲୋକେ ସ୍ନାନପୂର୍ଣ୍ଣିମା ଦିନ ବା ରଥଯାତ୍ରା ବେଳେ ଜଗନ୍ନାଥ ଦର୍ଶନକୁ ଗଲେ, ସେମାନେ ସ୍ୱଗୃହକୁ ଫେରିବା ପର୍ଯ୍ୟନ୍ତ ତାଙ୍କ ପରିବାରର ଲୋକେ ତାଙ୍କ ଜୀବନ ଉପରେ ଆସ୍ଥା ରଖୁନଥିଲେ । ଏପରିକି ମୋ ପିଲାଦିନେ ମୁଁ ଗାଁ ମାନଙ୍କରେ ଶୁଣିଛି, ଲୋକେ ପୁରୀଗଲେ ସେ ସ୍ୱର୍ଗ ପ୍ରାପ୍ତି ପାଇଁ ଯାଇଛି ବୋଲି କୁହାଯାଉଥିଲା । ଗୋପବନ୍ଧୁ ଓ ହରିହର ପୁରୀରେ ଗୋଟିଏ ସ୍ୱେଚ୍ଛାସେବକ ଦଳ ଗଠନ କରି ଏହି ହଇଜା ରୋଗୀଙ୍କର ସେବା କାର୍ଯ୍ୟରେ ନିଜକୁ ନିୟୋଜିତ କରିଥିଲେ । ସେମାନେ ବ୍ରାହ୍ମଣ ହେଲେ ବି ସମସାମୟିକ କୁସଂସ୍କାର ଊର୍ଦ୍ଧ୍ୱକୁ ଯାଇ ଯେ କୌଣସି ହଇଜା ରୋଗୀର ସେବା ବା ମୃତ ବ୍ୟକ୍ତିର ଶବ ସଂସ୍କାର ବିଷୟରେ ତିଳେମାତ୍ର ଇତସ୍ତତଃ ହେଉ ନ ଥିଲେ । ସେହିମାନଙ୍କ ଉଦ୍ୟମ ଯୋଗୁ ପରବର୍ତ୍ତୀ ସ୍ତରରେ ମୁରାରି ଭାଇନାଙ୍କ ନେତୃତ୍ୱରେ 'ପୁରୀ ସେବା ସମିତି' ଏତେ ସ୍ୱନାମଧନ୍ୟ ହୋଇପାରିଥିଲା ଏବଂ ଏବେ ମଧ୍ୟ ରଥଯାତ୍ରା ବେଳେ ତାଙ୍କ ଭଣଜା ଶ୍ରୀ ବଳରାମ ମିଶ୍ର ମାମୁଁଙ୍କ ଆଦର୍ଶକୁ ସଜୀବକରି ରଖିଛନ୍ତି ।'

ଆଗ୍ରଯ଼୍ୟଙ୍କ ଜୀବନ ଆଦର୍ଶମୟ । ଏହା ପାଶ୍ଚାତ୍ୟ ଆଦର୍ଶ ନୁହେଁ । ଏହା ପ୍ରାଚୀନ ଋଷିମାନଙ୍କର ଆଦର୍ଶ, ଯେଉଁ ଆଦର୍ଶରେ ସତ୍ୟବାଦୀ ବନବିଦ୍ୟାଳୟର ଶିକ୍ଷାପଦ୍ଧତି ପ୍ରଚଳିତ ଥିଲା । ତେଣୁ ଆଗ୍ରଯ଼୍ୟ ହରିହର ସଦାବେଳେ କହନ୍ତି, 'ମୋ ନିଜର କିଛି ନାହିଁ । ସବୁ ଦାଶେ ଆପଣେ । ଗୋପବନ୍ଧୁ ଦାଶ 'ସତ୍ୟବାଦୀ' ପତ୍ରିକାର ଦ୍ୱିତୀୟ ଖଣ୍ଡ ତୃତୀୟ ସଂଖ୍ୟାରେ 'ଭାରତୀୟ ନୀତି ଓ ଆଦର୍ଶ' ସଂପର୍କରେ ଯାହା ଉଲ୍ଲେଖ କରିଥିଲେ ତାହା ସଂପୂର୍ଣ୍ଣ ରୂପେ ଆଗ୍ରଯ଼୍ୟଙ୍କର ଜୀବନଦର୍ଶନ ପ୍ରତି ପ୍ରଯୁଜ୍ୟ ।

'ଭାରତୀୟ ଆର୍ଯ୍ୟପକ୍ଷରେ ଏ ସଂସାର କର୍ମଭୂମି, କର୍ମକ୍ଷୟ ହୋଇ ନ ଥିବାରୁ ମାନବ ଏଠାରେ ଜନ୍ମେ । କର୍ମସାଧନ ଏଠାରେ ତାହାର ଉଦ୍ଦେଶ୍ୟ ; ତେଣୁ ଆର୍ଯ୍ୟଜୀବନ କର୍ମମୟ । ପାଶ୍ଚାତ୍ୟମାନଙ୍କ ପରି ଅନ୍ୟଠାରୁ ସ୍ୱତ୍ତ୍ୱ ଦାବି କରିବା ଭାରତୀୟ ଜୀବନର ନିୟାମକ ନୀତି ନୁହେଁ । ଅନ୍ୟର ପ୍ରାପ୍ୟ ଦେବାକୁ ଭାରତୀୟ ବ୍ୟସ୍ତ । ଅନ୍ୟଠାରୁ ନିଜର ପ୍ରାପ୍ୟ ପାଇବାଲାଗି, ଅନ୍ୟ ଉପରେ ନିଜର ଅଧିକାର ସାବ୍ୟସ୍ତ କରିବାଲାଗି ସେ ତେତେ ବ୍ୟସ୍ତ ନୁହେଁ । ସ୍ଥୂଳରେ, ଅନ୍ୟର ଦେଣା ପରିଶୋଧ କରିବା ଅର୍ଥାତ୍ ଅନ୍ୟ ପ୍ରତି ନିଜର କର୍ତ୍ତବ୍ୟ କରିବାହିଁ ଭାରତୀୟ ଆର୍ଯ୍ୟର ଧର୍ମ । ସେ ଯେପରି ଏହି ଅସୀମ ବିଶ୍ୱବ୍ରହ୍ମାଣ୍ଡର କେନ୍ଦ୍ର; ଅତୀତ, ବର୍ତ୍ତମାନ, ଭବିଷ୍ୟତର ସମସ୍ତ ଚରାଚର ପ୍ରତି ତାର କର୍ତ୍ତବ୍ୟ ରହିଛି । ସେ ଅସଂଖ୍ୟ କର୍ତ୍ତବ୍ୟ ପରିଧିରେ ଆବୃତ । ପିତା ପୁତ୍ର, ପତି ପତ୍ନୀ, ରାଜା ପ୍ରଜା, ଶିକ୍ଷକ ଛାତ୍ର, ସାମନ୍ତ ସେବକ ଇତ୍ୟାଦି ବହୁବିଧ ଆପେକ୍ଷିକ ଅବସ୍ଥା ମଧ୍ୟରେ ମନୁଷ୍ୟ ରହିଅଛି ଏବଂ ଏହି ପ୍ରତ୍ୟେକ ଅବସ୍ଥାରେ ତାହାର ସ୍ୱତନ୍ତ୍ର କର୍ତ୍ତବ୍ୟ ଅଛି । ଏହିସବୁ କର୍ତ୍ତବ୍ୟ କରିପାରିଲେ ତାହାର ଜନ୍ମ ସାର୍ଥକ । ଏହି ଅସଂଖ୍ୟ କର୍ତ୍ତବ୍ୟର ସମଷ୍ଟି ମାନବ ଧର୍ମ । ଏହି ମାନବ ଧର୍ମ ରକ୍ଷା କରିବା ଲାଗି ଭାରତରେ ଯୁଗେ ଯୁଗେ ଭଗବାନଙ୍କର ଅବତାର । ପ୍ରଭୁ ଶ୍ରୀରାମଚନ୍ଦ୍ର ଜୀବନର ପ୍ରତି ପଦରେ ଏହି କର୍ତ୍ତବ୍ୟନିଷ୍ଠାର ପରାକାଷ୍ଠା ଦେଖାଇ ଯାଇଅଛନ୍ତି । ଜ୍ୟେଷ୍ଠ ପୁତ୍ର ବୋଲି ରାଜ୍ୟର ନିୟମ ଅନୁସାରେ ସିଂହାସନର ଅଧିକାରୀ, ମାତ୍ର ସେ ଅଧିକାର ଛାଡ଼ିବାକୁ ହେବ, ତାହା

ନ ହେଲେ ଏଣେ ଯେ ପୁତ୍ର ଧର୍ମରେ ହାନ ହେଉଛି । ପୁତ୍ର ଧର୍ମ, ପତି ଧର୍ମ, ଭ୍ରାତୃ ଧର୍ମ, ପିତୃ ଧର୍ମ, ରାଜ ଧର୍ମ ଆଦି ମାନବର ବହୁବିଧ ଆପେକ୍ଷିକ କର୍ତ୍ତବ୍ୟ ପାଳନରେ ଏଭଳି ଅସାମାନ୍ୟ ନିଷ୍ଠା ଜଗତର ଇତିହାସ ବା ସାହିତ୍ୟରେ ଏପରି ପୂର୍ଣ୍ଣମାତ୍ରାରେ ଆଉ କେଉଁଠାରେ ପ୍ରକାଶ ପାଉଛି ? ଅନ୍ୟଠାରୁ ନିଜର ପ୍ରାପ୍ୟ ଦାବି କରିବା ତ ସେ ଜୀବନରେ ନାହିଁ । ମୋର ଅନ୍ୟମାନଙ୍କ ପ୍ରତି କ'ଣ କର୍ତ୍ତବ୍ୟ ମୁଁ ତାହା ସଂପନ୍ନ କରିପାରିଲେ ମୋ ଜୀବନର ଉଦ୍ଦେଶ୍ୟ ସଫଳ ହେଲା ଏବଂ ଏଥିରେ ସମାଜର ଶୃଙ୍ଖଳା ଏବଂ ମର୍ଯ୍ୟାଦା ରକ୍ଷିତ ହେଲା । ରାମଚରିତରେ ସାମାଜିକ ମର୍ଯ୍ୟାଦା ଏବଂ ଶୃଙ୍ଖଳା ରକ୍ଷା ନିମନ୍ତେ ଅଦ୍ଭୁତ କର୍ତ୍ତବ୍ୟନିଷ୍ଠା ଏବଂ ତ୍ୟାଗଶୀଳତା ପ୍ରକଟିତ ହୋଇଥିବାରୁ ହିନ୍ଦୁ ଶାସ୍ତ୍ରକାରମାନେ ତାଙ୍କୁ ମର୍ଯ୍ୟାଦା ପୁରୁଷୋତ୍ତମ ବୋଲି କହନ୍ତି । ଆଜି ଭାରତୀୟ ସମାଜରେ ଏହି କର୍ତ୍ତବ୍ୟଜ୍ଞାନ ମଳିନ ହୋଇଅଛି । ବ୍ୟକ୍ତିଗତ ସ୍ୱାଧୀନତା ଟିକିଏ ବିକୃତ ଭାବରେ ବଢ଼ିବାକୁ ଆରମ୍ଭ ହୋଇଛି । ପିତା ପ୍ରତି ପୁତ୍ର କର୍ତ୍ତବ୍ୟ କରୁ ବା ନ କରୁ, ପିତା ତା ପ୍ରତି କର୍ତ୍ତବ୍ୟ କରିବାରେ କାହିଁକି ତ୍ରୁଟି କରିବେ ଏହି ପ୍ରଶ୍ନ ଆଗେ ଉଠୁଛି । ସ୍ତ୍ରୀ ସ୍ୱାମୀ, ଶିକ୍ଷକ ଛାତ୍ର ପ୍ରଭୃତି ପ୍ରାୟ ସକଳ ସଂପର୍କରେ ଊଣା ଅଧିକେ ଏହି ଅବସ୍ଥା । ମୋର ମୁଁ ଯାହା କଲି ତୁମର ସେଥିରେ କି ଗଲା ? କିନ୍ତୁ ତୁମର ମୋତେ ଯାହା ଦେୟ, ତୁମେ କାହିଁକି ଦେବ ନାହିଁ ? ଅନେକଙ୍କ ମତରେ ଏ ପ୍ରବୃତ୍ତି ମନ୍ଦ ନୁହେଁ; ସେମାନେ ମନେ କରନ୍ତି ଏହି ପ୍ରବୃତ୍ତିର ଅଭାବରୁ ଭାରତୀୟମାନଙ୍କର ରାଜନୈତିକ ଜୀବନ ଆଦୌ ବିକାଶ ପାଇନାହିଁ । ସେମାନେ କହନ୍ତି, ବର୍ତ୍ତମାନ ଏ ଦେଶର ଅବସ୍ଥା ବଦଳିଛି । ଭାରତୀୟମାନେ ବୈଦେଶିକ ଶାସନରେ ରହିଛନ୍ତି; ପାଶ୍ଚାତ୍ୟ ସଭ୍ୟତାର ସଂସ୍ରବରେ ଆସିଛନ୍ତି, 'ଯେ ଦେଶ ଯାଇ ସେ ଫଳ ଖାଇ' । ପାଶ୍ଚାତ୍ୟ ସଭ୍ୟତାର ମତି ଆପଣାର ସ୍ୱତ୍ୱ ଦାବିକରିବା, ସେହି ନୀତି ଅନୁସରଣ ନ କଲେ ଚଳିବ କାହିଁ ? ମାତ୍ର ସାମାନ୍ୟ ଚିନ୍ତାକରି ଦେଖିଲେ ଜଣାଯିବ କେବଳ ଦାବି କରିବାରେ କିଛି ଫଳ ନାହିଁ । ଆମ୍ଭମାନଙ୍କ ନିଜ ଜାତୀୟ ନୀତି ଓ ଆଦର୍ଶ ଛାଡ଼ିବା ଆବଶ୍ୟକ ନୁହେଁ । ଆମ୍ଭେମାନେ ଆଗେ ନିଜର କର୍ତ୍ତବ୍ୟ ପାଳନ କରୁ । ସବୁ

କ୍ଷେତ୍ରରେ ନିଜର ଧର୍ମ ରକ୍ଷା କରୁ । ଧର୍ମ ଅବଶ୍ୟ ଆମ୍ଭମାନଙ୍କୁ ରକ୍ଷା କରିବ ; ବିଶ୍ୱାସ କରିବାକୁ ହେବ ।

"ସ୍ୱଳ୍ପମପ୍ୟସ୍ୟ ଧର୍ମସ୍ୟ
ତ୍ରାୟତେ ମହତୋ ଭୟାତ୍ ।"

ଏହା ହିଁ ଥିଲା ଗୋପବନ୍ଧୁଙ୍କର ଜୀବନ ଦର୍ଶନ ଏବଂ ଜୀବନାଦର୍ଶ । ଆଚାର୍ଯ୍ୟ ହରିହର ଏହାକୁ ଅକ୍ଷରେ ଅକ୍ଷରେ ପାଳନ କରିଥିଲେ । ଆଗରୁ କୁହାଯାଇଛି, ଭାରତୀୟ ଆର୍ଯ୍ୟପକ୍ଷରେ ଏହି ସଂସାର କର୍ମଭୂମି । କର୍ମକ୍ଷୟ ହୋଇ ନ ଥିବାରୁ ମାନବ ଏଠାରେ ଜନ୍ମେ । କର୍ମ ସାଧନ ଏଠାରେ ତାହାର ଉଦ୍ଦେଶ୍ୟ । ତେଣୁ ଆର୍ଯ୍ୟ ଜୀବନ କର୍ମମୟ ।

ଆଚାର୍ଯ୍ୟେ ଏହି କର୍ମମୟତାରେ ନିଜକୁ ସଦା ସର୍ବଦା ବୁଡ଼ାଇ ରଖିଥିଲେ । ସେ କହୁଥିଲେ, 'ଆମକଥା ବର୍ତ୍ତମାନ କେହି ଶୁଣୁ ନାହାଁନ୍ତି । ଆମେ ପଦବ୍ରଜରେ ଭୂଦାନ ଏବଂ ଗ୍ରାମଦାନ ସକାଶେ ବାପୁଙ୍କ ପରି ଓଡ଼ିଶାର ଏପ୍ରାନ୍ତରୁ ସେପ୍ରାନ୍ତ ପର୍ଯ୍ୟନ୍ତ ବୁଲୁଥିବାର ଦେଖି ଲୋକମାନେ ଉପହାସ କରୁଅଛନ୍ତି । କିନ୍ତୁ ଜାଣିଥାଅ, ଗାନ୍ଧୀ, ଗୋପବନ୍ଧୁ ଓ ବିନୋବାଜୀଙ୍କ କଥାରେ ତିଳେମାତ୍ର ଅସତ୍ୟ ନାହିଁ । ଏହା ନିଶ୍ଚୟ ଦିନେ କାର୍ଯ୍ୟରେ ପରିଣତ ହେବ ।' ଏହି ଦୃଢ଼ ଧାରଣାର ବଶବର୍ତ୍ତୀ ହୋଇ ସେ ଦେଶ କାମରେ ଆପଣାକୁ ନିୟୋଜିତ କରିଥିଲେ ।

୧୯୬୪ ମସିହାରେ ଯେତେବେଳେ ଛାତ୍ର ଧର୍ମଘଟ ଭୀଷଣ ଆକାର ଧାରଣ କଲା, ସେତେବେଳେ ଆଚାର୍ଯ୍ୟେ ଅତ୍ୟନ୍ତ ବ୍ୟାକୁଳ ହୋଇ ଖବର କାଗଜରେ ଗୋଟିଏ ବିବୃତି ଦେଲେ, 'ମୁଁ କାହିଁକି ମୋ ପ୍ରିୟ ଛାତ୍ରମାନଙ୍କର ଏ ଦୁଃଖ ଓ ଦୁର୍ଦ୍ଦଶା ଦେଖି କଷ୍ଟ ପାଉଛି ।' ଏ ସଂପର୍କରେ ଉଲ୍ଲେଖ ଅଛି, '୧୯୬୪ ରେ ଆଚାର୍ଯ୍ୟ ହରିହର ପୁରୀରେ ଟିକିଏ ବିଶ୍ରାମନେବା ଅବସ୍ଥାରେ ଥାନ୍ତି । ଓଡ଼ିଶାରେ ଚାଲିଲା ଛାତ୍ର ଆନ୍ଦୋଳନ । ପୁଲିସ୍‌ଙ୍କ ଗୁଳିମାଡ଼ରେ କେତେଜଣ ଛାତ୍ର ପ୍ରାଣ ହରାଇଲେ । ସରକାରଙ୍କ ସହିତ ଗୋଟାଏ ମିଳାମିଶା ନ ହେବାରୁ ଓଡ଼ିଶାର ଚାରିଆଡ଼େ ସତେ ଯେପରି କି ଅଶାନ୍ତିର ନିଆଁ ବ୍ୟାପି ଯାଉଥାଏ । ଆଚାର୍ଯ୍ୟ ମହାଶୟ

ସ୍ଥିରହୋଇ ରହିପାରିଲେ ନାହିଁ । ବକ୍ତୃତାରେ ସେ କହିଥିଲେ, 'ମୁଁ ଧୃତରାଷ୍ଟ୍ରଙ୍କ ଭଳି ଅନ୍ଧହୋଇ ବସି ମୋର ନାତିନାତୁଣୀଙ୍କ ଦୁଃଖର କାହାଣୀ ଶୁଣିପାରିବି ନାହିଁ । କାହାର ଦୋଷ ସେ ବିଚାର ମୋ ପାଖରେ ନାହିଁ । ଯେଉଁମାନେ ଆଜି ଶାସନ ଗାଦିରେ, ସେମାନଙ୍କୁ ମଧ୍ୟ ମୁଁ ଗଭୀର ଶ୍ରଦ୍ଧା କରେ । ତଥାପି ମୁଁ ଯାଇ ଭୁବନେଶ୍ୱରରେ ଆମରଣ ଅନଶନ କରିବି । ଏ ନିଆଁ ଯଦି ଲିଭି ନ ଯାଏ, ମୁଁ ବଞ୍ଚିରହିବାର କୌଣସି ଆବଶ୍ୟକତା ନାହିଁ ।'

ଏହି ବକ୍ତୃତାର ପ୍ରଭାବ ଛାତ୍ରମାନଙ୍କ ଉପରେ ପଡ଼ିଥିଲା । ଛାତ୍ରମାନେ ଆଚାର୍ଯ୍ୟଙ୍କୁ ଅନଶନରୁ ନିବୃତ୍ତ କରିବା ନିମନ୍ତେ ବଦ୍ଧପରିକର ହୋଇଥିଲେ । ମହାତ୍ମା ଗାନ୍ଧୀଙ୍କର ଆଚାର୍ଯ୍ୟ ହରିହର ଥିଲେ ଏକାନ୍ତ ଅନୁରକ୍ତ ଓ ପ୍ରିୟ ଶିଷ୍ୟ । ଇଂରେଜ ଶାସନମାନଙ୍କ ବିରୁଦ୍ଧରେ ଅହିଂସାତ୍ମକ ଆନ୍ଦୋଳନ ଚଳାଇଥିଲେ ମଧ୍ୟ ସେ ଇଂରେଜ ବ୍ୟକ୍ତିମାନଙ୍କ ପ୍ରତି କୌଣସି ବିଦ୍ୱେଷ ପୋଷଣ କରୁ ନ ଥିଲେ ।

ଓଡ଼ିଶାର ଲବ୍‌ଧ ପ୍ରତିଷ୍ଠ ସାହିତ୍ୟିକ ଶ୍ରୀ କାଳନ୍ଦୀ ଚରଣ ପାଣିଗ୍ରାହୀ ଲେଖିଅଛନ୍ତି, 'ଭଲ କିଏ ଭେଲ କିଏ, ଖାଣ୍ଟି କ'ଣ ଭେଜାଲ୍ କ'ଣ' ସାଧାରଣ ଅଶିକ୍ଷିତ ଲୋକେ ହିଁ ସେ ଫରକଟା ବେଶୀ ଠଉରେଇ ପାରନ୍ତି । ତେଣୁ ଜଣେ ଆଦର୍ଶ ଶିକ୍ଷକ ହରିହର ଯେତେବେଳେ ଭୋଟପ୍ରାର୍ଥୀ ହେବାକୁ ଓହ୍ଲାଇ ଆସନ୍ତି, ତାଙ୍କୁ ହିଁ ସବୁଠାରୁ ବେଶୀ ସମର୍ଥନ ମିଳେ । କିନ୍ତୁ ମଣିଷର ଚରିତ୍ର ଗଢ଼ିବା ଯାହାଙ୍କର ବ୍ରତ, ଆଜି ସେଥିଲାଗି ଯେ ଆପଣା ଚରିତ୍ର ଗଢ଼ିବାରେ ଆଗ ବ୍ରତୀ ହୁଅନ୍ତି; ତାଙ୍କ ପକ୍ଷରେ ଭୋଟ ଗଣତି ହିସାବପତ୍ରରେ ବ୍ୟସ୍ତ ରହିବା ଅସମ୍ଭବ । ଆଚାର୍ଯ୍ୟ ହରିହରଙ୍କ ଜୀବନରେ ହିଁ ଏହି ଲକ୍ଷଣ ସୁସ୍ପଷ୍ଟ ।

ତାଙ୍କ ଭଳି ନିର୍ମଳ ନିଷ୍କପଟ ମଣିଷ ଭେଟିବା ଭାଗ୍ୟରେ ଥିଲେ ମିଳେ । ଚରିତ୍ର ତାଙ୍କର ଏତେ ବେଶୀ ସହଜ, ସରଳ, ସ୍ୱଚ୍ଛ ଯେ ଶିକ୍ଷକ ଥିବା ସମୟରେ ଛାତ୍ରମାନେ ତାଙ୍କୁ ଠକିବାକୁ ଉଦ୍ୟମ କରୁଥିବାର ଅନେକ କୌତୁକ ଗଳ୍ପ ଶୁଣିବାକୁ ମିଳେ ।

ଥରେ ଜଣେ ଛାତ୍ର ସତ୍ୟବାଦୀ ସ୍କୁଲରେ ହରିହର ଶିକ୍ଷକ ଥିବାବେଳେ ତାଙ୍କୁ କୁଆଡ଼େ ନିଜ ଘରକୁ ଯିବାପାଇଁ ଛୁଟି ମାଗିଥିଲେ । ଆଚାର୍ଯ୍ୟ ମହାଶୟ ତାକୁ ଛୁଟି ମାଗିବାର କାରଣ ପଚାରନ୍ତେ, ଛାତ୍ରଟି କହିଲେ ଯେ ଖାଲି ବାପ ମା, ଭାଇଭଉଣୀଙ୍କୁ ଟିକିଏ ଦେଖି ଆସିବାକୁ ତାର ଇଚ୍ଛା । କିନ୍ତୁ ଏଭଳି ଇଚ୍ଛା ପୂରଣର ଆବଶ୍ୟକତା ଦେଖୁ ନ ଥିବା ଆଚାର୍ଯ୍ୟ ତାହାର ଛୁଟି ମଞ୍ଜୁର କଲେ ନାହିଁ ।

ତହୁଁ ଛାତ୍ରଟି ଉତ୍ତର କରିଥିଲା, 'ତେବେ କ'ଣ ମୋ ବୋଉ ଦେହ ଦୁଃଖ ହୋଇଛି ବୋଲି ମିଛକଥା ଲେଖିଥିଲେ ମୋତେ ଛୁଟି ମିଳିଥାନ୍ତା ?' ଏଇ ପ୍ରଶ୍ନର ଉତ୍ତର ସ୍ୱରୂପ ସଙ୍ଗେ ସଙ୍ଗେ ପିଲାଟିକୁ ଛୁଟି ମିଳିଥିଲା । ହରିହର ଯେ କଠୋର ସତ୍ୟସନ୍ଧ ଥିଲେ, ଏହିଭଳି ସାନ ବଡ଼ ବହୁ ଘଟଣାରୁ ହିଁ ତାହା ପ୍ରମାଣିତ ହୋଇଛି ।

ସେଇ କାରଣରୁ ମିଛ କହି ତାଙ୍କୁ ଠକି ଦେବା ମଧ୍ୟ କୌଣସି ଛାତ୍ର ପକ୍ଷରେ ସହଜ ସାଧ୍ୟ ନ ଥିଲା । ଥରେ ଜଣେ ଛାତ୍ର କୁଆଡ଼େ ତାଙ୍କୁ ଏମିତି ଠକିବା ପାଇଁ ଆସି କହିଥିଲା, ଯେ ତାହାର କେତେକ ଅନ୍ତେବାସୀ ନାଲି କଳା ରଙ୍ଗରେ ଛପା ହୋଇଥିବା ଗୁରିକଣିଆ ଖବରକାଗଜ ସବୁ ଧରି ଖେଳୁଛନ୍ତି ।

ହରିହର ସେ ଛାତ୍ରଟିକି ମହାଧୂର୍ତ୍ତ ବୋଲି ଆଗରୁ ଜାଣିଥିଲେ । ତହୁଁ ତାକୁ ସେ ପଚାରିଲେ, 'ତୁ କ'ଣ ସେ କି ଖେଳ ଜାଣୁ ନ ?'

ତାଙ୍କର ଜଣେ ଅନ୍ତରଙ୍ଗ ସହକର୍ମୀ ଓ ଅନୁରକ୍ତ ସହଚର ଆଚାର୍ଯ୍ୟଙ୍କ ସମ୍ବନ୍ଧରେ ଯାହା ଉଲ୍ଲେଖ କରିଅଛନ୍ତି, ତାହା ଆଚାର୍ଯ୍ୟଙ୍କର ଜୀବନଦର୍ଶନର ପରିଚାୟକ । ସେ କିପରି ଧୈର୍ଯ୍ୟଶୀଳ ଥିଲେ ଏବଂ କୌଣସି କାର୍ଯ୍ୟ ତରବରରେ ନ କରି ଏହାର ଅଗ୍ର ପଶ୍ଚାତ ବିବେଚନା କରି କର୍ମତତ୍ପର ହେଉଥିଲେ, ତାହାର ଗୋଟିଏ ଜ୍ୱଳନ୍ତ ନିଦର୍ଶନ ଏହି କୌତୁକମୟ ଘଟଣାଟି । ଘଟଣାଟି ଯେଉଁ ବ୍ୟକ୍ତି ଉଲ୍ଲେଖ କରିଅଛନ୍ତି, ତାଙ୍କର ନାମ ଗୌରଶ୍ୟାମ ସାମନ୍ତରାୟ । ସେ ନିଜେ ଲେଖିଅଛନ୍ତି, 'ପୁରୀଜିଲ୍ଲା କୋଣାର୍କ ନିକଟ ଗଡ଼ରୁପାସ ମୋର ଗାଁ ଥିଲା ଓ ମୋ

ନେତୃତ୍ୱରେ ୮।୧୦ ଜଣ ଗାଁରୁ ଆନ୍ଦୋଳନରେ ଭାଗନେଇ ଜେଲ ବରଣ କରିଥିଲେ । ସେତେବେଳେ ଆମ ଗାଁ ଖୁବ୍ ଚହଲ ପକାଇଥିଲା । ତେଣୁ ଆଚାର୍ଯ୍ୟ ମହାଶୟ ବରାବର ଆମ ଗାଁକୁ ଆସୁଥିଲେ । ଆମ ଘରମାନଙ୍କୁ ଯାଇ ସମସ୍ତଙ୍କୁ ଦେଶ କଥା ଓ ଗାନ୍ଧିଜୀଙ୍କ ମତ ଆଦର୍ଶକୁ ବୁଝାଉଥିଲେ । ଗାଁ ଗହଳର ଏକତା ପାଇଁ ମୋର ଜଣେ ସହକର୍ମୀ ଶ୍ରୀ ନରେନ୍ଦ୍ର ପାଢ଼ ୨୧ ଦିନ ଆମରଣ ଅନଶନ କରିବାକୁ ସ୍ଥିର କଲେ । ଏ ଖବର ମୁଁ ସମ୍ବାଦପତ୍ରକୁ ପଠାଇବା ସଙ୍ଗେ ସଙ୍ଗେ ଆଚାର୍ଯ୍ୟ ହରିହରଙ୍କୁ ଖଣ୍ଡିଏ ଚିଠି ଲେଖି ଜଣାଇଲି ଓ ମତାମତ ଜାଣିବାକୁ ଚାହିଁଲି । ଅବଶ୍ୟ ତାଙ୍କଠାରୁ ଉତ୍ତର ଆସୁ ଆସୁ ଅନଶନ ଆରମ୍ଭ ହୋଇ ଯାଇଥିଲା । କାରଣ ସେତେବେଳେ ଆଚାର୍ଯ୍ୟ ମହାଶୟ ଗୋପବନ୍ଧୁ ସେବାସଦନରେ ନ ଥିଲେ । ଗସ୍ତରେ ଚାଲିଯାଇଥିବାରୁ ଚିଠିର ଜବାବ ଆସିବାରେ ଡେରି ହେଲା । ଚିଠିର ନକଲ ନିମ୍ନମତେ ଦେଲି ।

ଆୟୁଷ୍ମାନ ଗୌରଶ୍ୟାମ,

ତମର ପତ୍ର ପାଇଲି । ତମେ ଏତେ ବ୍ୟସ୍ତ ବା ତରବର ହେବା ଦରକାର ନାହିଁ, ଲୋକେ ହଠାତ୍ ଆମକଥା ଶୁଣିଯିବେ ନାହିଁ । ସେଥିପାଇଁ ଧୈର୍ଯ୍ୟ, ସାହସ ଓ ଚରିତ୍ରବଳ ଆବଶ୍ୟକ । ଆମେ ଆମ କାର୍ଯ୍ୟରେ ଦୃଢ଼ଭାବେ ଲାଗିରହିବା, ସେମାନଙ୍କୁ ବୁଝାଇବା । ତମେ ଘରେ ରହିଥିବା ପର୍ଯ୍ୟନ୍ତ ସେ କାମ ନିଷ୍ଠାର ସହିତ କର । ସେହି ଆଦର୍ଶ ଲୋକଙ୍କ ଆଗରେ କାର୍ଯ୍ୟରେ ରଖ, ଏହା ହିଁ ବଡ଼କାମ । ଦେଶର ଅବସ୍ଥା ତ ଏପରି । ଏହି ପରିସ୍ଥିତି ଭିତରେ କାମ କରିବାକୁ ହେବ । ନରେନ୍ଦ୍ର ଏତେ ଚଞ୍ଚଳ ଉପବାସ କରିବା ଦରକାର ନ ଥିଲା । ଯେଉଁ ଉଦ୍ଦେଶ୍ୟରେ ହେଉ ସତ୍ୟାଗ୍ରହର ଅସ୍ତ୍ର ଉପବାସ ବୋଲି ମହାତ୍ମାଜୀ କହନ୍ତି । ପ୍ରକୃତ ମଧ୍ୟ ତାହା କାମ ସବୁଦା କରି ଲୋକଙ୍କର ଆଳସ୍ୟ ଓ ନିଶ୍ଚେଷ୍ଟତା ଦୂର କରିବାକୁ ହେବ, ସେଥିପାଇଁ ଉପବାସ କରିବା ନିରର୍ଥକ । ମନୁଷ୍ୟ ଯଥାସାଧ୍ୟ ଚେଷ୍ଟା କରି ଅକୃତକାର୍ଯ୍ୟ ହେଲେ

ଶେଷରେ ଅନ୍ୟ ବିଷୟର । ଆଗେ କାମ ସବୁଦା ନିଜେ କରି ଅନ୍ୟକୁ କରାଇବ ଓ ସେଇ ଆଦର୍ଶରେ ଅନୁପ୍ରାଣିତ ହେବ । ନିଜର ଚରିତ୍ର ଠିକ୍ କରିବ ଓ ସତ୍ୟ ଅହିଂସା ପାଳନ କରିବ, ତା ପରେ ଉପବାସ ପ୍ରଭୃତି । ନରେନ୍ଦ୍ରକୁ କହିବ ଏ ଉପବାସର ସମୟ ନୁହେଁ, ଉପବାସ ବନ୍ଦକରି କାମରେ ନିତ୍ୟ ଲାଗିବା ଦରକାର । କର୍ମମୟ ଜୀବନ ସବୁର ମୂଳ । ସମସ୍ତ ସମସ୍ତରେ ପତ୍ର ଦେଉ ଥିବ । ସମୟ ହେଲେ ଯେତେ ଶୀଘ୍ର ପାରେ ଯିବି । ମୋର ସ୍ନେହାଶୀର୍ବାଦ ଗ୍ରହଣ କରିବ ଓ ଅନ୍ୟାନ୍ୟ ସମସ୍ତଙ୍କୁ ଜଣାଇଁ ଦେବ । ଏ ସତ୍ କାର୍ଯ୍ୟରେ ଭଗବାନ ତମକୁ ନିଶ୍ଚୟ ସହାୟ ହେବେ ।

। ଇତି ।

ଶୁଭାକାଙ୍‌କ୍ଷୀ

ହରିହର ଦାସ, କଟକ

ତା ୧୨ । ୨ । ୪୪

ଏହିପରି ନାନା କ୍ଷୁଦ୍ର କ୍ଷୁଦ୍ର ଘଟଣାର ସମଷ୍ଟି ହେଉଛି ଆଚାର୍ଯ୍ୟଙ୍କର ଜୀବନ ଦର୍ଶନ । କେଉଁଠାରେ ତାଙ୍କର ଜୀବନ ଦର୍ଶନ ନିର୍ଦ୍ଦିଷ୍ଟ ଭାବରେ ଅଭିବ୍ୟକ୍ତ ଲାଭକରି ନାହିଁ । କେବଳ ବିନମ୍ର ପ୍ରୀତି ଇଙ୍ଗିତ, ଆଦର୍ଶ ଓ କର୍ମଧାରା ତାଙ୍କ ଜୀବନ ଦର୍ଶନର ପରିଚାୟକ ।

ଆଉ ଜଣେ ଲେଖକ ତାଙ୍କ ଜୀବନ ଦର୍ଶନ ସଂପର୍କରେ ମନ୍ତବ୍ୟ ପ୍ରକାଶ କରି ସେ କିପରି ଦେଶସେବା ଓ ଜନ ସେବାରେ ଗୋପବନ୍ଧୁଙ୍କପରି ଜୀବନ ଆହୁତି ଦେଇଥିଲେ, ତାହାର ପ୍ରମାଣ ଦେଇ ଅଛନ୍ତି, 'ଆଚାର୍ଯ୍ୟ ହରିହର ଯୌବନାବସ୍ଥାରେ ପଣ୍ଡିତ ଗୋପବନ୍ଧୁଙ୍କର ଅନ୍ତରଙ୍ଗ ସହକର୍ମୀ-ଥିଲେ । ଯେବାର ସର୍ବଶ୍ରେଷ୍ଠ ପଥ ଲୋକସେବା ସେମାନଙ୍କ ଜୀବନର ବ୍ରତ ଥିଲା । ଏହାର ମୂଳ ଉତ୍ସଥିଲା, ଦୁର୍ଭିକ୍ଷ, ବନ୍ୟା ଏବଂ ବସନ୍ତକବଳିତ ଅସଂଖ୍ୟ ନିପୀଡ଼ିତ ଜନତାର ଦୁଃଖରେ ମ୍ରିୟମାଣ ହୋଇ ସେମାନଙ୍କ ଦୁଃଖ ଲାଘବ ନିମିତ୍ତ କର୍ମରତ ହେବାରେ । ସେ ଏହି ସେବାକୁ ଜନତା ଜନାର୍ଦ୍ଦନର ସେବା ବୋଲି କହୁଥିଲେ । ଦୁଃସ୍ଥ ଓ

ଦରିଦ୍ର ଲୋକମାନଙ୍କ ମଧ୍ୟରେ ଦେବତାର ସତ୍ତା ଦେଖିବା ଏବଂ ସେବାରେ ସେହି ଦେବପ୍ରାଣରେ ସନ୍ତୋଷ ପ୍ରଦାନ କରି ନିଜେ ବିମଳ ଆନନ୍ଦର ଅଧିକାରୀ ହେବାରେ ହିଁ ସେ ସତ୍ୟଚିତ ଓ ଆନନ୍ଦର ଉପାସକ ଭାବେ ଜୀବନକୁ ମହାର୍ଘ୍ୟ କରିଥିଲେ । ଏହାଥିଲା ତାଙ୍କର ଜୀବନ ଦର୍ଶନ ଓ ସାମାଜିକତା । ଏହି ସମାଜବାଦର ପ୍ରତିଷ୍ଠା ପାଇଁ ସେ ନିଜର ଶେଷ ଜୀବନ ପର୍ଯ୍ୟନ୍ତ ସାଧନା କରି ଆସିଥିଲେ । ସେଥିରେ ଫଳ ଲାଭର ଚିନ୍ତାପୃହା ନ ଥିଲା କିମ୍ବା ବିଫଳତାରେ ବିଚ୍ୟୁତ ନ ଥିଲା । ମାତ୍ର କର୍ମତତ୍ପରତାରେ ଅଶେଷ ଆନନ୍ଦର ଚିନ୍ମୟ ସଂଦର୍ଶନ ତାଙ୍କୁ ଆଣି ଦେଉଥିଲା ପ୍ରଶାନ୍ତିର ଗମ୍ଭୀର ନୀରବତା ।’

‘ଗୀତା ପ୍ରବଚନ’ରେ ଶ୍ରୀ ବିନୋବାଜୀ କହି ଅଛନ୍ତି, ‘ସ୍ଥିର ବୁଦ୍ଧି ମନୁଷ୍ୟକୁ ସ୍ଥିତପ୍ରଜ୍ଞ କହନ୍ତି । କିନ୍ତୁ ସଂଯମ ବିନା ବୁଦ୍ଧି ସ୍ଥିର ହେବ କିପରି ? ଏଣୁ ସ୍ଥିତପ୍ରଜ୍ଞଙ୍କୁ ସଂଯମ ମୂର୍ତ୍ତି କୁହାଯାଇଛି । ବୁଦ୍ଧି ଆତ୍ମନିଷ୍ଠ ହେବ ଏବଂ ଅନ୍ତର ଓ ବାହ୍ୟ ଇନ୍ଦ୍ରିୟମାନେ ବୁଦ୍ଧିର ଅଧୀନ ହେବେ । ଏହା ହିଁ ସଂଯମତାର ଅର୍ଥ । ସ୍ଥିତପ୍ରଜ୍ଞ ସମୁଦାୟ ଇନ୍ଦ୍ରିୟଙ୍କ ମୁହଁରେ ଲଗାମ ଦେଇ ସେମାନଙ୍କ କର୍ମଯୋଗରେ ହାଙ୍କୁଥାଏ ।’ ଏହିପରି ଭାବରେ ଆଚୂର୍ଣ୍ଣ୍ୟ ସାତ୍ତ୍ୱିକ ଭାବାପନ୍ନ ବିଶ୍ୱର ବୁଦ୍ଧି ସଂପୂର୍ଣ୍ଣ ଓ ସ୍ଥିତପ୍ରଜ୍ଞ ବ୍ୟକ୍ତିଥିଲେ । ଗୀତାରେ ଲେଖାଅଛି, ‘ଯାହାଙ୍କର ସମସ୍ତ ଇନ୍ଦ୍ରିୟମାନେ ଆପଣା ଆପଣା ବିଷୟମାନଙ୍କରୁ ସର୍ବତୋଭାବରେ ନିବୃତ୍ତ ହୋଇଛନ୍ତି ତାହାଙ୍କର ବୁଦ୍ଧି ପ୍ରତିଷ୍ଠିତ; ଅର୍ଥାତ୍ ସେ ସ୍ଥିର ବୁଦ୍ଧି ଅଟନ୍ତି ।’

ସର୍ବଦା ନାନା ନଦୀ ଜଳରେ ପୂର୍ଣ୍ଣ ହୋଇ ସୁଦ୍ଧା ସମୁଦ୍ର ଯେପରି ଆପଣା ସୀମା ଲଙ୍ଘନ କରେ ନାହିଁ (ସର୍ବଦା ସମଭାବରେ ଥାଏ) ଏବଂ ସେଥିରେ ଅନ୍ୟ ଜଳସବୁ ମିଶି ବିଲୀନ ହୋଇଯାଆନ୍ତି; ସେହିପରି ସମସ୍ତ କାମନା ଯେଉଁ ନିର୍ବିକାର ମୁନିଙ୍କଠାରେ ପ୍ରବେଶ କରି ଲୟ ପ୍ରାପ୍ତ ହୁଏ, ସେହି ମୁନି କେବଳ ଶାନ୍ତି ପ୍ରାପ୍ତ ହୁଅନ୍ତି; ପରନ୍ତୁ କାମନା ପରତନ୍ତ୍ର ବ୍ୟକ୍ତି ଶାନ୍ତିପ୍ରାପ୍ତ ହୁଏ ନାହିଁ ।’

ଏହି ଜୀବନ୍ ଦର୍ଶନକୁ ଦୃଷ୍ଟି ଆଗରେ ରଖି କଠୋର ସଂଯମ ଓ ଶୃଙ୍ଖଳା ପାଳନ କରି ଆମକୁ ନିଜ ନିଜ କର୍ମ କ୍ଷେତ୍ରରେ ଅଗ୍ରସର ହେବାକୁ ହେବ । ଏହାଠାରୁ ଆମ କ୍ଷୁଦ୍ର ଓ ସଂକୀର୍ଣ୍ଣ ଜୀବନରେ ଆଉ କ'ଣ ଉତ୍କୃଷ୍ଟତର କଥା ଥାଇପାରେ ? ଏହାହିଁ 'ଆଚାର୍ଯ୍ୟଙ୍କ ଜୀବନର ଉଦାତ୍ତ ବାଣୀ, ଗମ୍ଭୀର ଉପଦେଶ ଓ ଆବେଗମୟ ଆଦେଶ । ଏଥିପାଇଁ ସେ ସ୍ୱର୍ଗଲୋକରୁ ପ୍ରତିନିମିଷରେ ଆମକୁ ଚାହିଁ ରହିଛନ୍ତି । ଆମେ ଦୁର୍ବଳ ଓ ନିରାଶ୍ରୟ । ଆମକୁ ବଳ ବୀର୍ଯ୍ୟ, ସାହସ ଓ ଅଟଳ ବିଶ୍ୱାସ କେବଳ ଦେବ ସେହି ଅମରାତ୍ମା;—

କିନ୍ତୁ ଏ କ'ଣ ସହଜ ସାଧନାର ପଥ ?



# ଭଲ ମଣିଷ ହୁଅ

## ( ଓଡ଼ିଆ ସାହିତ୍ୟରେ ଆଚାର୍ଯ୍ୟଙ୍କର ରୂପାୟନ )

— ୧୦ —

ସାହିତ୍ୟ ମନୁଷ୍ୟ ଜୀବନର ପ୍ରତିବିମ୍ବ । ମାନବାତ୍ମାର ମୁକୁର ସ୍ୱରୂପ । ସାହିତ୍ୟ ମଧ୍ୟ ସମାଜର ପ୍ରତିଚ୍ଛବି । ଯୁଗ ପୁରୁଷମାନଙ୍କୁ ସାହିତ୍ୟର ବିସ୍ତୀର୍ଣ୍ଣ ପରିସର ମଧ୍ୟକୁ ଟାଣିନେଇ ସାହିତ୍ୟିକମାନେ ଏହି ମହାତ୍ମାମାନଙ୍କର ଜୀବନାଦର୍ଶ ଆମ ସମ୍ମୁଖରେ ଉପସ୍ଥାପନ କରିଥାନ୍ତି । କ୍ଷୁଦ୍ର ଗଳ୍ପରେ ମଧ୍ୟ ଏହି ଯୁଗ ପୁରୁଷମାନଙ୍କର ଆତ୍ମାର ଖଣ୍ଡାଂଶ ଚିତ୍ର ପ୍ରକଟିତ ହୋଇଥାଏ । ଏହିମାନେ କ୍ଷୁଦ୍ର ଗଳ୍ପର ଅଙ୍ଗିଭୂତ ହୋଇ ଚିରକାଳ ପାଠକ ପ୍ରାଣରେ ଘାତ୍ରି ମନ୍ତ ହୋଇ ରହିଥାନ୍ତି । ନଅାଁ ଖୁଣ୍ଟାର ୰ ସଂପାଦକ ଶ୍ରୀ ଗୋଦାବରୀଶ ମହାପାତ୍ର କେବଳ ଜଣେ ରାଜନୀତି ଓ ସମାଜର ସଂସ୍କାରକ ନ ଥିଲେ, ସେ ଥିଲେ ଜଣେ ଉଚ୍ଚକୋଟୀର ସୃଜନଶୀଳ ପ୍ରତିଭାବାନ୍ ଲେଖକ । ସେ ସତ୍ୟବାଦୀ ବନବିଦ୍ୟାଳୟର ଜଣେ ଅସାଧାରଣ ଗୁରୁ ଥିଲେ । ସେ ଗୋପବନ୍ଧୁଙ୍କ ମହତ୍ତ୍ୱ ଚରିତ୍ରବଳର ଗୌରବ ପ୍ରକଟିତ କରିବା ଉଦ୍ଦେଶ୍ୟରେ କେତେଗୋଟି କ୍ଷୁଦ୍ର ଗଳ୍ପ ଓ କବିତା ରଚନା କରିଅଛନ୍ତି । ସେଥି ମଧ୍ୟରୁ 'ଏବେ ମଧ୍ୟ ବଞ୍ଚିଛି' ଏବଂ 'ତୁ କ'ଣ ସତେ ପଥର ହେଲୁ', ଏହି ଦୁଇଟି ଶୁଭ୍ର ଓ ସମୁଜ୍ଜ୍ୱଳ କ୍ଷୁଦ୍ରଗଳ୍ପ । 'ଏବେ ମଧ୍ୟ ବଞ୍ଚିଛି'ର ପ୍ରତିପାଦ୍ୟ ବିଷୟ ହେଲା :—ଗୋପବନ୍ଧୁ ଯେଉଁ ସାହାଯ୍ୟ କେନ୍ଦ୍ରରେ ଥାଇ ଦୁର୍ଭିକ୍ଷ ପ୍ରପୀଡ଼ିତ ଲୋକମାନଙ୍କୁ ଚାଉଳ ବାଣ୍ଟୁଥିଲେ, ତାର ଅଳ୍ପଦୂରରେ ସତ୍ୟବାଦୀ ବନବିଦ୍ୟାଳୟରେ କେତେ-ବର୍ଷ ତଳେ ପାଠ ପଢ଼ିଥିବା ବେଣୁଧର ଠିଆହୋଇଛି । ତାର ପରିବାରର ଲୋକେ ଅନେକ ଦିନ ହେଲା ଯେପରି ଅନ୍ନ ସ୍ପର୍ଶ କରିନାହାଁନ୍ତି, ସେମାନଙ୍କ ଦେହରେ କେବଳ ଅଛି ଅସ୍ଥି ଓ ଚର୍ମ । ତଥାପି ବେଣୁଧର ସାହାଯ୍ୟ କେନ୍ଦ୍ରକୁ ଚାଉଳ ମାଗିବାକୁ ନ ଯାଇ ଠିଆହୋଇ ଭାବୁଛି,

'ମୁଁ କପର ଏହି ସାହାଯ୍ୟ କେନ୍ଦ୍ରକୁ ଯାଇ ଗୃଉଳ ପାଇଁ ହାତପତାଇବ ?' ମୁଁ ଯେଉଁଠାରେ ପାଠ ପଢ଼ୁଥିଲି ସେଠାର ଗୁରୁଦେବମାନେ ମୋତେ ବାରମ୍ବାର ଉପଦେଶ ଦେଇ କହିଛନ୍ତି, 'ଲଗିକର ଖାଅ । ମାଗି ଖାଅ ନାହିଁ । ସ୍ୱାବଲମ୍ବନଶୀଳ ହୁଅ । ପରଉପରେ ନର୍ଭର କରନାହିଁ ।' ଗୋପବନ୍ଧୁ ଯେତେବେଳେ ଶୁଣିଲେ ବେଣୁଧର କାହିଁକ ଗୃଉଳ ନେବାକୁ ଆସୁନାହିଁ, ସେତେବେଳେ ସେ ଗୋଟିଏ ଉଷ୍ଣ ଦୀର୍ଘ ନଶ୍ୱାସ ପକାଇ କହିଲେ, 'ଏ ଜାତ ଏବେ ମଧ ବଞ୍ଚିଛି' ।

'ତୁ କ'ଣ ପଥର ହେଲୁ' ଏହି ଗଳ୍ପର ସାରମର୍ମ ହେଲା, ସେତେବେଳେ ଉତ୍ତର ଅଞ୍ଚଳରେ ଦୁର୍ଭିକ୍ଷ ପଡ଼ଥିଲା । ଗୋଟିଏ ବଧବାର ଏକମାତ୍ର ପୁତ୍ରକୁ ସାହାଯ୍ୟ ଦେଇ ଗୋପବନ୍ଧୁ ତାକୁ ବଞ୍ଚାଇଥିଲେ । ସେହି ପୁଅଟି ପରେ ନାନା ରୋଗରେ ଆକ୍ରାନ୍ତ ହୋଇ ମରଗଲା । ଶୋକାତୁର ଜନନୀ ଆସି ବୁଲି ବୁଲି ପୁଣି ଜଗନ୍ନାଥଙ୍କ ସିଂହଦ୍ୱାରରେ ପହଞ୍ଚିଲା । ସେଠାରେ ଯାହାକୁ ଦେଖିଲା ତାକୁ ପଗୃରିଲା, 'ମୋ ଜୀବନ ଦେବତା କାହାନ୍ତି ?' ଲୋକେ ତା'ଠାରୁ ସବୁ କଥାଶୁଣି ତାକୁ କହିଲେ, 'ତୋର ଜୀବନ ଦେବତା ଏହି ଯେଉଁ ପ୍ରତମୂର୍ତ୍ତି ଦେଖୁଛୁ ସେହି ମହାତ୍ମା ପଥର ପାଲଟି ଯାଇଛନ୍ତି ।' ଏହି କଥା ଶୁଣି ସେହି ବାହ୍ମଣୀ ବଧବା କହିଲା, 'ହେ ଜୀବନ ସର୍ବସ୍ୱ, ହେ ମୋର ପ୍ରାଣର ଦେବତା, ସତେ ତୁ କ'ଣ ମୋର ଦୁର୍ଭାଗ୍ୟକୁ ପଥର ପାଲଟି ଗଲୁ ?'

ଏହି ଦୁଇଟି ଗଳ୍ପ ଯେପର ଗୋପବନ୍ଧୁଙ୍କ ଜୀବନର ମହତ୍ତ୍ୱ ପ୍ରତପାଦନ କରେ, ସେହିପର 'ଆଗୃର୍ଯ୍ୟେ ଥିଲେ ବୋଲି', ତାହା ଆଗୃର୍ଯ୍ୟ ମହାଶୟଙ୍କର ମହତ୍ତ୍ୱର ପରଚୟ ଦଏ । ଏହି ଗଳ୍ପର ରଚୟିତା ଅଧ୍ୟାପକ ରାଜକଶୋର ରାୟ । ସେ ନଜେ ଲେଖିଛନ୍ତି, 'ଏକ ପକ୍ଷରେ ରଖିଥିଲି ସେହି ସତ୍ୟାଶ୍ରୟୀ ବ୍ୟକ୍ତି ଆଗୃର୍ଯ୍ୟଙ୍କୁ, ଅନ୍ୟପକ୍ଷରେ ରଖିଥିଲି ଶଠ, ପ୍ରତାରକ ଓ ଭଣ୍ଡ ତପସ୍ୱୀମାନଙ୍କୁ ।' 'ଆଗୃର୍ଯ୍ୟେ ଥିଲେ ବୋଲି' ସମସ୍ତେ ତାଙ୍କୁ ଦେଖିବା ମାତ୍ରେ ନମିଷକେ ସତ ହୋଇଗଲେ, କନ୍ତୁ ସେମାନଙ୍କ ଅନ୍ତର ଭିତରେ ଛଳନାର ପରସୀମା ରହିଲା ନାହିଁ । ଆଜ ଏ

ସୀମାତ ବିପୁଳ ହୋଇ ଲମ୍ବିଯାଇଛି । ଏହାହିଁ ତ ଏକ ସୁଖପ୍ରିୟ ପେଷା ହୋଇଛି ।

ଏହି ତପସ୍ୱୀଙ୍କର ଦେହାନ୍ତ ପରେ ତାଙ୍କ ଜୀବନର ଏକ ବର୍ଣ୍ଣିଳ ବିଭାଗ ଯାହା କି ଗଳ୍ପଟିରେ ସତ୍ୟାନୁସରଣରେ ରୂପାୟିତ ହୋଇଛି, ତାହା ବିଷୟରେ ମତେ ମନେ ପକାଇ ବହୁ ପତ୍ର ପ୍ରେରକ ମୋ ପାଖକୁ ପତ୍ର ଦେଇଛନ୍ତି । ସେଥିରୁ ଗୋଟିଏ ପତ୍ର ମୁଁ ଉଦ୍ଧାର କରୁଅଛି ।

ମହାଶୟ,

ଏ ପତ୍ର ଲେଖିବାର ଏକମାତ୍ର କାରଣ ହେଉଛି, 'ଆଶ୍ଚର୍ଯ୍ୟ ନାହାନ୍ତି ବୋଲି, ଉତ୍କଳର ବିବେକ ଆଚାର୍ଯ୍ୟ ହରିହରଙ୍କ ତ୍ୟାଗପୂତ ଜୀବନ ଦୀପ ନିର୍ବାପିତ ହୋଇଯାଇଛି । ଏହା ଆମ୍ଭମାନଙ୍କ ପାଇଁ ଦାରୁଣ ଦୁଃସମ୍ବାଦ । ମାତ୍ର ଆପଣ ତଥା ଆପଣଙ୍କ ସମସାମୟିକ ଗୋଷ୍ଠୀ ପାଇଁ ଏହା ନିସନ୍ଦେହରେ ଏକ ଅପୂରଣୀୟ କ୍ଷତି । ଆପଣ ଆଚାର୍ଯ୍ୟ ମହାଶୟଙ୍କ ଘନିଷ୍ଠ ସଂସ୍ପର୍ଶରେ ଆସିଥିବେ ବୋଲି ମୋର ଦୃଢ଼ ବିଶ୍ୱାସ । ଆମ ପାଠ୍ୟକ୍ରମରେ ଆମେ ପାଠ କରିଥିବା 'ଆଶ୍ଚର୍ଯ୍ୟ ଥିଲେ ବୋଲି' ଶୀର୍ଷକ କ୍ଷୁଦ୍ର ଗଳ୍ପର ପ୍ରାଣକେନ୍ଦ୍ର ବୋଧହୁଏ ପୂଜ୍ୟ ଆଚାର୍ଯ୍ୟ ମହାଶୟ । ଆପଣ ସେଥିରେ ତତ୍କାଳୀନ ଭଣ୍ଡ ତପସ୍ୱୀମାନଙ୍କ କାର୍ଯ୍ୟକଳାପର ତିକ୍ତ ଅଭିଜ୍ଞତା ଆମମାନଙ୍କର ବୃଦ୍ଧି ପାଇଛି । ଆପଣଙ୍କ ଗଳ୍ପର ସମସ୍ୟାର ସମାଧାନ ହୋଇନାହିଁ । ମୁଁ ନିଶ୍ଚିତ ଆପଣଙ୍କ ବଳିଷ୍ଠ ଲେଖମାର ସୁବ୍ୟ ଆତ୍ମପ୍ରକାଶ ଆମ୍ଭମାନଙ୍କୁ ଦିଗ୍‌ଦର୍ଶନ ପ୍ରଦାନ କରିବ । ଇତି ।

ପରମେଶ୍ୱର ବେହେରା
ଗଙ୍ଗାଧର ମେହେର ସାନ୍ଧ୍ୟ ମହାବିଦ୍ୟାଳୟ
ସମ୍ବଲପୁର
ରାଜନୀତି ବିଜ୍ଞାନ ବିଭାଗ

ଆଗୃର୍ଯ୍ୟ ଉପସ୍ଥିତ ଥିବା ସମୟରେ ଭଣ୍ଡ ତପସ୍ୱୀ ଓ କଳାବଜାରୀ-ମାନଙ୍କର ମସ୍ତକ କପର ଲଜ୍ଜା ଓ ସଂକୋଚରେ ନଇଁପଡ଼ିଲା ତାହାର ଚିତ୍ର ଲେଖକ ଚନ୍ଦ୍ର ତନ୍ନ କର ବର୍ଣ୍ଣନା କରବାକୁ ଯାଇ ଲେଖିଅଛନ୍ତି, 'ଟିକଏ ଦୂରରେ ଖଣ୍ଡିଏ ଓଡ଼ିଆ ସମ୍ବାଦ ପତ୍ର ଖୋଲି ଜଣେ ଟୋପିଧାରୀ ଝୁଲିହସ୍ତ କଂଗ୍ରେସ କର୍ମୀ ମହାତ୍ମା ଗାନ୍ଧୀଙ୍କର ପ୍ରାୟୋପବେଶନର ବାର୍ତ୍ତା ବୋଧହୁଏ ପଢ଼ୁଥିଲେ । ଜଣାଯାଉ ଥିଲା, ଯେପର ଅଭିନବେଶ ଟିକଏ ବେଶୀ ହୋଇଯାଇଛି ।'

'ବାବୁ, ଅନ୍ଧ ଣୀ ବୁଢ଼ୀ, କଅଣ ଦିଅ ବାବୁ ।' ଥରେ ନୁହେଁ, ବହୁଥର ଏ ମର୍ମସ୍ପର୍ଶୀ ବାଣୀ କଂଗ୍ରେସ କର୍ମୀଙ୍କର କାନରେ ପଡ଼ୁଛି, କନ୍ତୁ ମହାତ୍ମାଙ୍କର ଅନଶନ ସମ୍ବାଦରେ ତାଙ୍କର ମନ ଏତେ ବିହ୍ୱଳ ହୋଇଛି ଯେ, ବୁଢ଼ୀର ବକଳ କାନକୁ ଯାଉ ନାହିଁ । କେତେବେଳକୁ ବରକ୍ତିରେ ସେ କହିଲେ, 'ଓଃ, କେତେ ବକ୍ ବକ୍ କରୁଛୁ । ରହ, ବାଡ଼ିଟା ଲଗାଏଁ । କଲେ ବୁଢ଼ୀ, ନନ୍ତ ଯଦ ତୁ ଇମିତ ଭିଖ ମାଗିବୁ, ତେବେ ସମାଜର ସଂସ୍ଥା ରହିବ କପର ?' ଏହା କହି କର୍ମୀ ଜଣକ ମୋ ଉପରେ ଦୃକ୍ପାତ କର 'ସମାଜ ସଂସ୍ଥା' ଭଳି ଗୋଟିଏ ରାଜନୀତିକ ଶବ୍ଦ ଶୁଣାଇଁ ପାରିଛନ୍ତି ବୋଲି ଆତ୍ମତୃପ୍ତିରେ ଟିକଏ ହସିଲେ ।

କଂଗ୍ରେସ କର୍ମୀଙ୍କର ଅବସ୍ଥା ଯେତେବେଳେ ଅନ୍ଧୁଣୀ ପ୍ରତି ନିଷ୍ଠୁର ଓ ନର୍ଦ୍ଦୟ, ସେତେବେଳେ ଅନ୍ୟ କୌଣସି ଭଣ୍ଡ ଓ କଳାବଜାରୀ କଥା ଆଉ କ'ଣ କହିବା ? ଆଚାର୍ଯ୍ୟ ହରହରଙ୍କୁ ଦେଖି ଦୁଇ ମୁହୂର୍ତ୍ତ ଭିତରେ ଷ୍ଟେସନ୍‌ର କୋଳାହଳ ଯେପର ସ୍ଥିର ହୋଇ ଆସିଲା । କି, ମ ? କଏ ସେ ? କଏ ସେ ? କ୍ଷିଣ କଣ୍ଠରେ କଏ କହିଲା, 'ଆଗୃର୍ଯ୍ୟ । ସେ କଣ୍ଠ ପୁଣି ସ୍ପଷ୍ଟ ଶୁଣାଗଲା, ଆଗୃର୍ଯ୍ୟ ମହାଶୟ । ସେ ସ୍ପଷ୍ଟ କଣ୍ଠ ପୁଣି ସ୍ପଷ୍ଟତର ହୋଇ ଶୁଣାଗଲା, ଆଗୃର୍ଯ୍ୟ ହରହର' । ଅନ୍ୟ ଜଣେ କଏ କହିଲା— 'ଋଷିପ୍ରତମ' ।

ମୁଣ୍ଡିଆ—
ପ୍ରଣାମ—

ମୁଣ୍ଡିଆ—
ଜୁହାର—
ପାଦଧୂଳି ଦିଅନ୍ତୁ—

ଉତ୍ତର ଶୁଭିଲା, 'ହଉ ବାବା, ଭଲ ଅଛ ? ଢେଙ୍କାନାଳରେ କାମଥିଲା, ଯାଇଥିଲି । ଆନ୍ଦୋଳନରୁ କ୍ଷାନ୍ତ ରହିବାକୁ କହିଲି, ମୋ କଥା ପିଲାମାନେ ଶୁଣିଛନ୍ତି, ସେହି ମୋର ଶାନ୍ତି । ହଁ, ସତ୍ୟବାଦୀରେ ବ୍ରାହ୍ମଣେ ହୀଳ କଲେ, ମୋ ଉପରକୁ ସମସ୍ତେ ଖପ୍ପା । ହଉ ବାବା, ଭଲ ଅଛ ? ସୂତା କାଟୁଛ ତ ? ଗୀତା ପଢ଼ିବ ? ଯେ ଯେଉଁ ମତରେ ଯାଅ, ସେ ବୁଢ଼ା ଜନନାୟକଙ୍କୁ ମନରେ ରଖିଥିବ । କେଉଁ ଉବାରେ ବସିବା ? ଏଇଠି ବସିଗଲେ ହେବ । ସାରଙ୍ଗ, ତମେ ଟିକେଟ ଆଣ ।'

'ଆଗ୍ରହୀ ଥିଲେ ବୋଲି' ଗଳ୍ପର ବ୍ୟାଖ୍ୟା କରି ନିଜେ ଲେଖକ ଉପସଂହାରରେ ଲେଖିଅଛନ୍ତି, 'ମୁଁ କେବଳ ଲୋତକପୂର୍ଣ୍ଣ ଚକ୍ଷୁରେ ଏହି ମହାବୋଧିସଂପର୍ଣ୍ଣ ବ୍ୟକ୍ତିଙ୍କର ମହାପ୍ରୟାଣକୁ ଲକ୍ଷ୍ୟ କରୁଛି । ତାଙ୍କ ସହିତ ଏକ ଶତାବ୍ଦୀର ଅବସାନ ହୋଇଗଲା । ମାନବ ଜାତିକୁ ଉଦ୍‌ବୁଦ୍ଧ କରିବା ପାଇଁ ସେ ପ୍ରେୟର ପନ୍ଥା ଛାଡ଼ି ଶ୍ରେୟର ପନ୍ଥା ଦେଖାଇଲେ । ଏ ଜାତି ଯଦି ବାସ୍ତବରେ ଅଭୀପ୍ସା ରଖେ, ଏହି ମହାଲୋକବର୍ତ୍ତିକାକୁ ଗ୍ରହି ଗ୍ରହି ଜୀବନ ପଥକୁ ସୁନ୍ଦର କରିବାକୁ, ନଚେତ୍ ହିଂସାର ଉନ୍ମତ୍ ପୃଥିବୀ ସହ ତୃଣ ଖଣ୍ଡ ସମ ସେ ବି ଜଳିଯିବ ।

ଈଶ୍ବର ତାହା ନ କରନ୍ତୁ । ପୁଣ୍ୟାତ୍ମା ହରିହରଙ୍କର ଆଶୀର୍ବାଦ ସହସ୍ର ଧାରରେ ବର୍ଷିତ ହେଉ । ସମସ୍ତେ ଶାନ୍ତ ହୁଅନ୍ତୁ । ପୂତ ହୁଅନ୍ତୁ । ହୁଅନ୍ତୁ ମାନବିକ ।



# ଭଲ ମଣିଷ ହୁଅ

## ମହାପ୍ରୟାଣ

— ୧୧ —

'୧୯୭୯ ଶେଷବେଳକୁ ଦେଖାଗଲା ଯେ ତାଙ୍କ ଦେହ ମଝିରେ ମଝିରେ ଖରାପ ହେଉଛି । ସେତେବେଳେ ସେ ଅନେକ କଥା ଭୁଲି ଯାଉଛନ୍ତି । ଅନେକ ସମୟରେ ଡାକ୍ତରମାନଙ୍କର ପରାମର୍ଶ ଲୋଡ଼ା ପଡ଼ୁଛି । ପୁରୀ ଗୋପବନ୍ଧୁ ସେବା ସଦନରେ ତାଙ୍କର ଯତ୍ନ ନେବାର ସବୁ ବ୍ୟବସ୍ଥା କରି ହେଉ ନାହିଁ । ତେଣୁ ସେ କଟକକୁ ଆସିଲେ ଡାକ୍ତରମାନେ ଦେଖିପାରିବେ ଏବଂ ବହୁ ଲୋକଙ୍କ ମେଳରେ ରହିଲେ ତାଙ୍କୁ ଟିକିଏ ଭଲ ଲାଗିବ । ଏହି ସବୁ କାରଣରୁ ଆଚାର୍ଯ୍ୟଙ୍କୁ କଟକ ଥୋରିଆ ସାହିର ଭୂଦାନ ଅଫିସ୍‌କୁ ଆଣିବାର ବ୍ୟବସ୍ଥା କରାଗଲା ।'

ଏହାପରି ଭାବରେ ଶ୍ରୀ ବିନୋଦ କାନୁନ୍‌ଗୋ ତାଙ୍କର ଚରମ ଅବସ୍ଥା ଅତି ପ୍ରାଞ୍ଜଳ ଭାବରେ ବର୍ଣ୍ଣନା କରିଅଛନ୍ତି । ଏହି ବର୍ଣ୍ଣନାରେ କୌଣସି କପୋଳ କଳ୍ପନା ନାହିଁ । ଏହା ତାଙ୍କର ଅନୁଭୂତିର କଥା । ସେ ପୁଣି ଲେଖିଅଛନ୍ତି, ଖାଇବା ଛାଡ଼ିଦେବେ ବୋଲି ଜିଦ୍ ଧରିଲେ । ବହୁ କଷ୍ଟରେ ରାଜି ହେଲେ କେବଳ ତରଳ ଖାଦ୍ୟ ଖାଇବା ପାଇଁ । ସଜ ଘୋଳାଦହି ଟିକିଏ, କେତେବେଳେ କିଛି ଫଳରସ, ଅଳ୍ପ ଟିକିଏ ହର୍ଲିକ୍‌ସ ବା ସେହିଭଳି କିଛି ଖୁଆଇ ତାଙ୍କୁ ବଞ୍ଚାଇ ରଖାଯାଇଥାଏ । ସଚି ବାବୁଙ୍କ ପକ୍ଷରେ ଆଉ ଚବିଶ ଘଣ୍ଟା ଜଗିବା ସମ୍ଭବ ହେଲା ନାହିଁ । ନିଜ ଇଚ୍ଛାରେ ଖାଡ଼ା, ପରିସ୍ରା ସେ କରୁ ନ ଥାନ୍ତି । ଛୋଟ ଶିଶୁଙ୍କର ଯେଉଁଭଳି ଖାଡ଼ା, ପରିସ୍ରା କରାନ୍ତି ତାଙ୍କୁ ମଧ୍ୟ ସେହିଭଳି କରାଯାଉଥାଏ । ଭୂଦାନ କର୍ମୀ ସୁରେନ୍ଦ୍ରନାଥ ମହାନ୍ତି ଆଉ ଜଣେ ଆଚାର୍ଯ୍ୟଙ୍କ ସେବକ ଭାବରେ ଯୋଗ ଦେଲେ । ରମାଦେବୀଙ୍କର ସଜାଗ ଦୃଷ୍ଟି ସବୁବେଳେ

ଥାଏ । ଡାକ୍ତରମାନଙ୍କ ଭିତରୁ ଶରତ ଚନ୍ଦ୍ର ମିଶ୍ର, ସୁଧାକର ଆଚାର୍ଯ୍ୟ, ହରିଶ୍ଚନ୍ଦ୍ର ରାୟ, ଗୁରୁପ୍ରସାଦ ମହାନ୍ତି, ନୃସିଂହ ଚରଣ ମିଶ୍ର, କିଶୋର ଚନ୍ଦ୍ର ମିଶ୍ର, ବନମାଳୀ ପ୍ରମୁଖ ନିକଟ ଭାବରେ ଆଚାର୍ଯ୍ୟଙ୍କ ଶରୀରର ଦାୟିତ୍ୱ ନେଇଥାନ୍ତି । ଭାଇ ବୋଧୂ, ନାତୁଣୀ, ପୁତୁରା ରବିନାରାୟଣ ରାୟ, ନବକିଶୋର, ଉମାଚରଣ, ସଚ୍ଚିଦାନନ୍ଦ, ଲକ୍ଷ୍ମୀନାରାୟଣ ଓ ରାଜକିଶୋର, ଝିଅମାନେ ଗୃହଲତା, ଗୀତା, ଝିଅମାନଙ୍କ ଜ୍ୱାଇଁ ରାଧିକା ପ୍ରସାଦ, କାଳୀପ୍ରସାଦ ତାଙ୍କର ଯତ୍ନ ନେଉଥାନ୍ତି । ଭୂଦାନ ଅଫିସ୍‌ର ସମସ୍ତେ ସତେ ଯେପରି ହରିହରଙ୍କ ସେବା ପାଇଁ ସବୁବେଳେ ପ୍ରସ୍ତୁତ ହୋଇ ରହିଥାନ୍ତି । ମଝିରେ ମଝିରେ ତାଙ୍କ ଅବସ୍ଥା ଉଦ୍‌ବେଗଜନକ ହୋଇଉଠେ । ଖବର ପାଇ ସମ୍ବାଦପତ୍ରରୁ ପଢ଼ି ବହୁଲୋକ ଦେଖିବାକୁ ଆସନ୍ତି । ଓଡ଼ିଶାର ଭିନ୍ନ ଭିନ୍ନ ଅଞ୍ଚଳରୁ ଯିଏ ଯେତେବେଳେ କଟକ ଆସନ୍ତି ଆଚାର୍ଯ୍ୟଙ୍କର ଦର୍ଶନ କରିବାକୁ ଭୁଲନ୍ତି ନାହିଁ । ସେ କାହାକୁ ଚିହ୍ନୁ ନ ଥାନ୍ତି, କାହା କଥା ଶୁଣୁ ନ ଥାନ୍ତି ; କିନ୍ତୁ ସମସ୍ତେ ତାଙ୍କ ପାଖରେ ଟିକିଏ ବସିଗଲେ ବା ପାଦସ୍ପର୍ଶ କଲେ ଅନୁଭବ କରନ୍ତି ସତେ ଯେପରି ସେ କଥାବାର୍ତ୍ତା କରୁଛନ୍ତି । ଯେତେ ଲୋକ ତାଙ୍କୁ ଦେଖିବାକୁ ଆସନ୍ତି ସମସ୍ତେ ଏକ ମୁଖରେ ସ୍ୱୀକାର କରନ୍ତି ଯେ ତାଙ୍କର ଯେଉଁଭଳି ସେବା କରାଯାଉଅଛି ଆଉ କେହି ସେଭଳି କରିପାରନ୍ତେ ନାହିଁ । ୧୯୭୧ ଫେବୃୟାରୀ ୧୯ ତାରିଖ ଆସିଗଲା । ଦ୍ୱିପହର ବେଳକୁ ଜଣାପଡ଼ିଲା ଯେ ଛାତି ଭିତରେ କଫ ହୋଇଛି । ଦେହରେ ଜ୍ୱର ଥାଏ, ଡାକ୍ତରମାନେ ଆଶଙ୍କା କଲେ । ମାସ ମାସ ଧରି ପଡ଼ିରହିଛନ୍ତି, ଯଦିଓ ନିଜେ କିଛି ପ୍ରକାଶ କରିପାରୁ ନାହାନ୍ତି, ଭିତରେ କଷ୍ଟ ପାଉଥିବେ ବୋଲି କେହି କେହି ମଝିରେ ମଝିରେ ମତ ଦିଅନ୍ତି । 'ତାଙ୍କୁ ଭଗବାନ ନେଇଯାଆନ୍ତୁ' ବୋଲି ମଧ୍ୟ କେବେ କେବେ କାହାରି ମୁହଁରୁ ଶୁଣାଯାଇଛି । ତଥାପି ସମସ୍ତଙ୍କ ମନ ଦବିଆସୁଥାଏ । ପୂର୍ବରୁ କେତେଥର ସେ ଯିବା ଯିବା ଅବସ୍ଥାକୁ ଆସିଯାଇଛନ୍ତି, ପୁଣି ଭଲ ହୋଇଯାଇଛନ୍ତି । ଏଥର ସେ ମଧ୍ୟ ଭଲ ହୋଇଯାଇପାରନ୍ତି । ସେ ଏମିତି ଶୋଇ ରହିଥିଲେ ବି ଅନ୍ୟମାନେ ପ୍ରେରଣା ପାଉଛନ୍ତି ।

କୋଡ଼ିଏ ତାରିଖ ଗୋଟାଏ ବେଳକୁ ଅବସ୍ଥା ଆହୁରି ଖରାପ ହୋଇଆସିଲା । କଫର ପ୍ରକୋପ ବଢ଼ୁଛି, ଘର୍ଘ ନିଶ୍ୱାସ ପକାଇଲେଣି । କୌଣସି ପ୍ରକାରର ଇଞ୍ଜେକ୍‌ସନ ଦେଇ ତାଙ୍କୁ କଷ୍ଟ ଦିଆଯିବ ନାହିଁ ବୋଲି ସ୍ଥିର କରାଯାଇଥାଏ । ଅକ୍‌ସିଜେନ ଦେଲେ ଭଲ ହୁଅନ୍ତା ! ଗୋଟାଏ ସିଲିଣ୍ଡର ରେଟାଙ୍ଗି ବ୍ଲକ୍‌ରୁ ଯୋଗାଡ଼ ହେଲା । 'ମୁଖା' ସାହାଯ୍ୟରେ ନାକବାଟେ ଅକ୍‌ସିଜେନ ଦେବାରୁ ଜୋର ନିଶ୍ୱାସଟା ଟିକିଏ ଧୀର ହେଲା । ଜଣକ ପରେ ଜଣେ ଡାକ୍ତର ଆସି ଦେଖୁଥାନ୍ତି । ଏ ଔଷଧ ସେ ଔଷଧ ଆଣ ବୋଲି ବିବାଦ ହେଉଥାଏ । ସାନଭାଇ, ଝିଆରୀ, ପୁତୁରା, ଭୂଦାନ କର୍ମୀମାନେ ତାଙ୍କ ସହିତ ଗ୍ରାଳିଶ ପଚାଶ ବର୍ଷ କଟାଇ ଆସିଥିବା କେତେଜଣ ସାଧାରଣ କର୍ମୀ ପାଖେ ପାଖେ ଥାଆନ୍ତି । ବୟସରେ ତାଙ୍କଠାରୁ ୪ । ୫ ବର୍ଷ ସାନ ପଣ୍ଡିତ ହୋତା ଓ ତାଙ୍କ ଝିଅ ବୟସର ୭୨ ବର୍ଷ ବୟସ୍କା ରମାଦେବୀ, ଭୂଦାନ ସର୍ବୋଦୟ ହତା ଭିତରେ ଏପାଖ ସେପାଖ ବୁଲି ବୁଲି ନିଜ ମନକୁ କଅଣ ସବୁ ବୁଝାଉଥାନ୍ତି ।

ସଂଧ୍ୟା ହୋଇଗଲା, ଖବରକାଗଜ ଗୁଡ଼ାକରେ ବାହାରି ପଡ଼ିଲା ଯେ ତାଙ୍କ ଅବାସ୍ଥା ଉଦ୍‌ବେଗଜନକ । ରାତି ୧୦ଟା ପର୍ଯ୍ୟନ୍ତ ବହୁଲୋକ ଆସି ବୁଝି ଯାଉଥାନ୍ତି କେମିତି ଅଛନ୍ତି । ଡାକ୍ତର ଶରତ ବାବୁ, ନୃସିଂହ ବାବୁ, ସୁଧାକର ବାବୁ ପାଳି କଲାଭଳି ଜଣକ ପରେ ଜଣେ ଜଗିଥାନ୍ତି ।

ତାଙ୍କ ରୋଗ ଶଯ୍ୟାର ଖୁବ୍ ଅଳ୍ପ ଦୂରରେ ସମବେତ ପ୍ରାର୍ଥନା ଗମ୍ଭୀର ବାତାବରଣ ଭିତରେ ହେଲା । ଯେଉଁ ଭଜନଗୁଡ଼ିକ ତାଙ୍କୁ ଖୁବ୍ ଭଲ ଲାଗେ, ସେଥିରୁ ଗୋଟିଏ ଜଣେ ଭଉଣୀ ବୋଲିଲେ । ଦୁଇ ତିନିଜଣ ତାଙ୍କ ପାଖରେ ବସି ରହିଲେ, ଅନ୍ୟମାନେ ଏଠି ସେଠି ଶୋଇପଡ଼ିଥାନ୍ତି । ରାତି ୨ଟା ୫୦ ମିନିଟ୍ , ଦେଖାଗଲା ଯେ ସେ କ୍ରମେ ଦବି ଆସୁଛନ୍ତି ; ଆଉ ଉଠିବେ ବୋଲି ଆଶା ରହିଲା ନାହିଁ । ତାଙ୍କ 'ଜନ୍ମ ପରିବାର'ର ଯେଉଁମାନେ ଅଳ୍ପ କେତେ ଘଣ୍ଟା ପୂର୍ବରୁ ଖିଆପିଆ

କରିବାକୁ ଚାଲିଯାଇଥିଲେ ସେମାନଙ୍କୁ ଡକାଇ ପଠାଗଲା । ସେମାନଙ୍କ ବ୍ୟକ୍ତିତ ଆଉ ଛ, ସାତଜଣ ଶେଷ ମୁହୂର୍ତ୍ତରେ ଉପସ୍ଥିତ ହେବେ ବୋଲି ଅନୁଭବ କରିପିବାରୁ ସେମାନଙ୍କୁ ମଧ୍ୟ ଡକାଗଲା । ଗୀତା ପାଠ ଆରମ୍ଭ ହୋଇଯାଇଥାଏ, ଦୁଇଜଣ ଡାକ୍ତର ବସି ରହିଥାନ୍ତି ।

ସକାଳ ୭ଟା ୫୨ ମିନଟ୍; ଏକାଦଶୀ ତିଥି ଆରମ୍ଭ, ଶେଷ ନିଶ୍ୱାସ ବନ୍ଦ ହୋଇଗଲା । ସମସ୍ତେ ପାଦକୁ ଛୁଇଁ ମୁଣ୍ଡି ଆଟିଏ ଲେଖାଁ ମାତ୍ର ନୀରବରେ ଠିଆ ହୋଇରହିଲେ ।

ଦିନ ୧୧ଟା ବେଳେ ଭୂଦାନ ଅଫିସ୍‌ରୁ ଶବ ଶୋଭାଯାତ୍ରା ବାହାରିଲା । ସାକ୍ଷୀଗୋପାଳକୁ ଶବ ନିଆଯିବ । ପୁରୀରୁ ବହୁ ଲୋକ ଟେଲିଫୋନ ଯୋଗେ ନିବେଦନ କଲେ ଯେ ପୁରୀ ସହରର ଲୋକେ ଯେପରି ତାଙ୍କ ଶେଷ ଦର୍ଶନର ସୁଯୋଗ ପାଆନ୍ତି । ତେଣୁ ସ୍ଥିର ହେଲା, ଶୋଭାଯାତ୍ରା ବାଣୀବିହାର ବାଟେ ପୁରୀ ଯିବ ଓ ସେଠାରୁ ଫେରି ବକୁଳବନ ସମାଧି ପୀଠରେ ଶେଷକୃତ୍ୟ ସଂପନ୍ନ ହେବ ।

ମଟରରେ ଆଚାର୍ଯ୍ୟଙ୍କର ଶବକୁ ନିଆଗଲା ବେଳେ କଟକରୁ ପୁରୀ ଓ ସାକ୍ଷୀଗୋପାଳ ଭିତରେ ବହୁ ସ୍ଥାନରେ ଶୋକାକୁଳ ଜନତା ଶବାଧାର ଉପରେ ଭକ୍ତି ପୁଷ୍ପ ବୃଷ୍ଟି କରୁଥାନ୍ତି । ଦୀର୍ଘ ସାଢ଼େ ପାଞ୍ଚ ଘଣ୍ଟା କାଳ 'ରାମ ନାମ ସତ୍ୟ' ବୋଲି ହେଉଥାଏ । ସାକ୍ଷୀଗୋପାଳରେ ଅପୂର୍ବ ଦୃଶ୍ୟ । ଗୋପବନ୍ଧୁ, ଗୋଦାବରୀଶ, ହରିହର, ନୀଳକଣ୍ଠ, କୃପାସିନ୍ଧୁ—ଏହି ପଞ୍ଚସଖାଙ୍କ ଭିତରୁ ଆଚାର୍ଯ୍ୟ ହରିହର ଥିଲେ ଶେଷ ସଖା । ତାଙ୍କ ସହିତ ଗୋଟିଏ ଯୁଗ ଚାଲିଗଲା ବୋଲି ସମସ୍ତେ କହୁଛନ୍ତି ।

ଆଉ ଜଣେ ଆଚାର୍ଯ୍ୟଙ୍କର ସହକର୍ମୀ ଶ୍ରୀ ନରହରି ସ୍ୱାଇଁ 'ମହାମାନବର ମହାପ୍ରୟାଣ ପଥେ' ପ୍ରବନ୍ଧରେ ଉଲ୍ଲେଖ କରିଅଛନ୍ତି, ଦିନ ଘ ୧୧।୧୫ ମି: ରେ ପୁଷ୍ପସଜ୍ଜିତ ଶବ ଶୋଭାଯାତ୍ରା ଚାଲିଲା ଆଗକୁ ଆଗକୁ । ମଙ୍ଗଳାବାଗ୍, କାଣ୍ଟନ୍‌ମେଣ୍ଟରୋଡ୍ ଦେଇ ଶୋଭାଯାତ୍ରା ପହଞ୍ଚିଲା 'ସମାଜ' ଅଫିସ୍ ଆଗରେ । 'ସମାଜ' ଅଫିସ୍ ଆଗରେ ଜନତାର କ୍ରନ୍ଦନମିଶ୍ରିତ

ଶ୍ରଦ୍ଧାଞ୍ଜଳି ବଢ଼ କରୁଣ । ଏହି 'ସମାଜ' ପତ୍ରିକା ପାଇଁ ଏହାଙ୍କର ଦାନ କମ୍ ନୁହେଁ । ଦାସେ ଆପଣେଙ୍କ ତାଗ୍ୱରଣ ପରେ କିଛି ଦିନ ସମାଜର ସଂପାଦକ ଭାବେ ସେ କାର୍ଯ୍ୟ ମଧ୍ୟ ତୁଲାଇ ଥିଲେ । ୫ ମିନିଟ୍ ଗାଡ଼ି ଠିଆ ହୋଇରହିଲା 'ସମାଜ' ଅଫିସ୍ ଆଗରେ ; ଠିକ୍ ସେହି ସମୟରେ ଗୋପବନ୍ଧୁବାଗର ପ୍ରସ୍ତର ମଞ୍ଚ ଉପରୁ ସତେ ଯେପରି ୰ ଗୋପବନ୍ଧୁ ଦାସ ତାଙ୍କର ପରମ ପ୍ରିୟ ଶେଷ ସଖାଙ୍କ ବିଚ୍ଛେଦର କରୁଣ ଦୃଶ୍ୟ ଦେଖୁଥାନ୍ତି ଏବଂ କହୁଥାନ୍ତି,—

"ମାନବ ଜୀବନ ନୁହଁଇ କେବଳ
ବର୍ଷ ମାସ ଦିନ ଦଣ୍ଡ
କର୍ମେ ଜୀଏଁ ନର କର୍ମ ଏକାତାର
ଜୀବନର ମାନଦଣ୍ଡ ।"

ଦାସେ ଆପଣେଙ୍କର ଏହି ମହାୟସୀ ବାଣୀକୁ ଅକ୍ଷରେ ଅକ୍ଷରେ ପାଳନ କରି ନିଜର ଅଲୌକିକ ନିଷ୍କାମ କର୍ମସାଧନା ଫଳରେ ସେ ଆଜି ଏତେ ବଡ଼ ମହାନ ପୁରୁଷ ପାଲଟି ଗଲେ । ଗୀତାର ୨ୟ ଅଧ୍ୟାୟ ଅନୁଯାୟୀ ନିଜକୁ ଗଢ଼ି ଶେଷରେ 'ସ୍ଥିତପ୍ରଜ୍ଞ' ହୋଇ ମାନବ ସମାଜକୁ ଦେଖାଇ ଦେଇ ଗଲେ ମହାନ୍ ଆଦର୍ଶ । 'ନିଜର ସାଧନା ଫଳରେ ବି ମନୁଷ୍ୟ ଦେବତ୍ୱର ସ୍ଥାନ ଅଧିକାର କରିପାରେ ।'

"ମାନବ ଦେହେ ଦିବ୍ୟ ଜ୍ଞାନ
ଦେଖି ସନ୍ତୋଷ ଭଗବାନ ।"

ତା'ପରେ ଶୋଭାଯାତ୍ରା ପହଞ୍ଚିଲା ପି. ଏମ୍. ଏକାଡେମୀର ତିନିକୋଣିଆ ଛକ ପାଖରେ । ଜନତାର ଗୁରୁଗମ୍ଭୀର ଭିଡ଼ ସାଥିରେ ଏକାଡେମୀର ଶିକ୍ଷକ ଓ ଛାତ୍ର ଛାତ୍ରୀଙ୍କର କରୁଣାପ୍ରଦ ଶେଷ ଦର୍ଶନ ବଡ଼ ମର୍ମସ୍ପର୍ଶୀ ହୋଇଥିଲା । ଏହି ସେହି ପୁଣ୍ୟ ଶିକ୍ଷାକେନ୍ଦ୍ର, ଯେଉଁଠାରେ କି ଆଚାର୍ଯ୍ୟ ମହାଶୟ ଯୌବନର ୫ଟି ବର୍ଷ ଶିକ୍ଷକତାରେ କଟାଇ ଜଣେ ଆଦର୍ଶ ଶିକ୍ଷକ ଭାବରେ ଖ୍ୟାତି ଅର୍ଜନ କରି ଶେଷରେ 'ଆଚାର୍ଯ୍ୟ' ହୋଇଗଲେ । ନିଜର ସୁନିର୍ମଳ ନୈତିକ ଚରିତ୍ରବତ୍ତା ଯୋଗୁ ସେ ବହୁ

ବିପଥଗାମୀ ଛାତ୍ର ଛାତ୍ରୀଙ୍କୁ ମଣିଷ କରାଇ ଉପଯୁକ୍ତ ମଣିଷଭାବେ ଗଢ଼ିପାରିଥିଲେ । ବିଭିନ୍ନ ବିପଦ ଆପଦ ବେଳେ ସ୍ୱେଚ୍ଛାସେବୀ ବାହିନୀ ଗଢ଼ି 'ମାନବସେବା ହିଁ ଈଶ୍ୱର ସେବା'ର ଭାବନା, ଏହି ବିଦ୍ୟାପୀଠହିଁ ତାଙ୍କ ପ୍ରାଣରେ ଉଦ୍‌ବୁଦ୍ଧ କରାଇଥିଲା । ଏହିଠାରୁ ଶିକ୍ଷକତା ଗ୍ରହଣ ଦାସେ ଆପଣଙ୍କ ଆହ୍ୱାନ ହେମେ ଯୁଗର ତୀର୍ଥଭୂଇଁ, ଜାତୀୟ ଜୀବନର ପୀଠ ବକୁଳ ଛୁରିଅନା ବନରେ ତପସ୍ୟା ରତ ମହାନ୍ ସାଧକ ଆଜ ସାରା ଦେଶରେ 'ଆଚାର୍ଯ୍ୟ' ରୂପେ ପୂଜା ପାଇଲେ । କଟକରେ ଶେଷ ସମ୍ମାନ ପ୍ରଦର୍ଶନ ପରେ ଶବାଧାର ପଟୁଆର ଚାଲିଲା ଭୁବନେଶ୍ୱର ଆଡ଼େ । ଗୁହୁଁ ଘୁହୁଁ ନୀଳ ଆକାଶରେ ଭାସି ଉଠିଲା ଖଣ୍ଡ ଖଣ୍ଡ କଳା ବଉଦମାଳା, ସତେ ଯେପରି ଏ ମହାପୁରୁଷଙ୍କର ଯଶଗାଥା ଶୁଣିବା ପାଇଁ ଓ ଦେଖିବା ପାଇଁ ସ୍ୱର୍ଗବାସୀ ଅତିଷ୍ଠ ହୋଇଉଠିଲେ । ସେଥିପାଇଁ ହୁଏତ ଆକାଶ ଅଇନା ମଳିନ ପଡ଼ିଗଲା ।

ଶବାଧାର ଗାଡ଼ି ପଛକୁ ପଛକୁ ସାନ ବଡ଼ ବହୁ ଗାଡ଼ି । ଭୁବନେଶ୍ୱରର ବାଣୀବିହାରଠାରେ ପହଞ୍ଚିଲାବେଳକୁ ଅଂସଖ୍ୟ ଜନତାର ଆବେଗଭରା ଦର୍ଶନ ଭୁଲିବାର ନୁହେଁ । ହଜାର ହଜାର ଛାତ୍ର ଛାତ୍ରୀ ଶେଷ ଦର୍ଶନ ପାଇଁ ଉଠି ପଡ଼ି ଯେପରି ଦଉଡ଼ ଦଉଡ଼ କାନ୍ଦ କାନ୍ଦ ଶେଷ ଦର୍ଶନ କରୁଥାନ୍ତି, ତାହା ବଡ଼ ମର୍ମସ୍ପର୍ଶୀ । ବିଶେଷତଃ ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ଥିଲେ ତାଙ୍କର ଛାତ୍ର । ଅନ୍ତିମ ଶଯ୍ୟାରେ ପୂଜ୍ୟଗୁରୁ ଆଚାର୍ଯ୍ୟ ମହାଶୟଙ୍କର ମରଶରୀରର ଦୃଶ୍ୟ ଦେଖି ତାଙ୍କ ଆଖିରୁ ବହିଯାଉଥାଏ ଧାର ଧାର ହୋଇ ଲୁହଧାର । ତାହା ସାଥିକୁ ଛାତ୍ର ଛାତ୍ରୀଙ୍କର ବ୍ୟଥିତ ହୃଦୟର କରୁଣ ବେଦନା କାହାକୁ ବା ସ୍ପର୍ଶ ନ କରିବ ? ୧୯୬୪ ମସିହାରେ ଓଡ଼ିଶାର ଐତିହାସିକ ଛାତ୍ର ଧର୍ମଘଟ ବେଳେ ଆଚାର୍ଯ୍ୟ ମହାଶୟଙ୍କର ଦାନ ଭୁଲିବାର ନୁହେଁ । ତାଙ୍କର କି ଶକ୍ତି ଥିଲା କେଜାଣି ! ସେ ଯେଉଁଠି ପହଞ୍ଚିଥିଲେ, ସେ ସ୍ଥାନରେ ଶାନ୍ତି ବ୍ୟତିରେକ ଅଶାନ୍ତିର ଚିହ୍ନ ସୁଦ୍ଧା ଦେଖାଯାଉ ନ ଥିଲା । ଏତିକିବେଳେ ପିଲାମାନଙ୍କ ମୁହଁରୁ ଶୁଭୁଥାଏ,—ଆଚାର୍ଯ୍ୟ ଚାଲିଗଲେ ଏ ଜାତିକୁ ବାଟ ଦେଖାଇବ କିଏ ?' ବାସ୍ତବିକ୍ ଆଜି ତାଙ୍କର ଅଭାବ ସର୍ବେ ଅନୁଭବ

କରୁଛନ୍ତି । ସେ ପ୍ରକୃତରେ ଥିଲେ ଏ ଦେଶର ପଥପ୍ରଦର୍ଶକ, ସତ୍ୟ, ସେବା, ଅହିଂସାର ପ୍ରତିମୂର୍ତ୍ତି ।

ରବିବାର ହେତୁ ଭୁବନେଶ୍ୱରର ବାଟ ଘାଟ ନିଘୁଞ୍ଚିଆ । ସେକ୍ରେଟାରିଏଟ୍ ଦେଇ ଶବାଧାର ଯିବାବେଳେ 'ଉତ୍କଳ କଂଗ୍ରେସ'ର ଅମାନିଆଁ ଜପ୍ ଘାଣ୍ଟା ଉଚ୍ଚ ସ୍ୱରରେ ରାମନାମ ଗାନ କରି କରି ଆଗରେ ଛୁଟିଥାଏ । ସେକ୍ରେଟାରିଏଟର ପତାକା ଅର୍ଦ୍ଧନମିତ ହୋଇ ନ ଥିଲେ ବି ସତେ ଯେପରି ବିରାଟ ଅଟ୍ଟାଳିକା ଉପରୁ ଲାଜରା ମୁହଁରେ ଲାଜକୁଳୀ ଲତା ପରି ପତାକା ଦଣ୍ଡରେ ଗୁଡ଼ାଇ ହୋଇ ନତମସ୍ତକରେ କଣେଇଁ କଣେଇଁ ଚାହିଁ ଶ୍ରଦ୍ଧାଞ୍ଜଳି ଜ୍ଞାପନ କରୁଥାଏ । ସତେ ଯେପରି କହୁଥାଏ, 'ହେ ଓଡ଼ିଶାର ବରପୁତ୍ର ! ତୁମ୍ଭେ ଏ ଅଧଃପତିତ ଦେଶର ହିତ ସାଧନ ପାଇଁ ଧୂପକାଠି ପରି ଜଳି ଅପରକୁ ଆନନ୍ଦ ଦେଲ ।' ମାତ୍ର ଏ ଜାତି ତାର ପ୍ରତିଦାନରେ ଦେଉଛି କ'ଣ ? ସେ କଥା ପ୍ରତି ସତେ ଯେପରି ତାଙ୍କର ଭ୍ରୂକ୍ଷେପ ନାହିଁ । ସତେ ଯେପରି କହୁଥାନ୍ତି,— 'ତୁମେ ଭଲ ମଣିଷ ହୁଅ, ଦେଶ ଓ ଦଶର ସେବା କର ।' ବାଟରେ ବହୁ ଛକ ସ୍ଥାନରେ ଅଗଣିତ ଜନତାର ହରିବୋଲ୍, ହୁଳହୁଳି ଧ୍ୱନି ସାଥିକୁ ଶବାଧାର ପାଖରେ ବସିଥିବା ଅଧ୍ୟାପକ ସର୍ବେଶ୍ୱର ଦାସ, ବିନୋଦ କାନୁନ୍‌ଗୋ, ସଚ୍ଚିଦାନନ୍ଦ ମହାନ୍ତି, ମନମୋହନ ଚୌଧୁରୀ, ଗୋପିନାଥ ସାହୁ, ନରହରି ସ୍ୱାଇଁ, କିଶୋର ଚନ୍ଦ୍ର ପ୍ରଧାନଙ୍କ ଆକୁଳିତ 'ରାମ ନାମ ସତ୍ୟ ହେ' ମର୍ମସ୍ପର୍ଶୀ ଧ୍ୱନି ଜନତା ପ୍ରାଣରେ ଆହୁରି ଗଭୀର ଉଚ୍ଛ୍ୱାସ ଭାବ ଜାତ କରୁଥାଏ । ବହୁ ଛକରେ ଲୋକେ ଖୋଳ କରତାଳ ଧରି ହରିନାମ ଗାଇ ଗାଇ ଅଭ୍ୟର୍ଥନା ଜଣାଉଥାନ୍ତି ।

ଏହିପରି ଭାବରେ ତାଙ୍କର ଶବାଧାର ଯାଉଥିବା ସମୟରେ ଶତ ଶତ ଲୋକ ଛିଡ଼ାହୋଇ ସାଶ୍ରୁନେତ୍ରରେ ପଥପାର୍ଶ୍ୱରେ ତାଙ୍କ ପ୍ରତି ଶ୍ରଦ୍ଧାଞ୍ଜଳି ନିବେଦନ କରୁଥିଲେ । ଶେଷରେ ଶବାଧାର ପୁରୀରୁ ଫେରିଆସି ଗୋପବନ୍ଧୁଙ୍କ ସମାଧି ପୀଠରେ ପହଞ୍ଚିଲା । ଅସଂଖ୍ୟ ଲୋକ ତାଙ୍କର ଶେଷ ଦର୍ଶନ ଲାଭ କରିବା ନିମନ୍ତେ ସେଠାରେ ଉପସ୍ଥିତ ଥିଲେ । ସେହିଠାରେ ଆଚାର୍ଯ୍ୟଙ୍କ ଶବରେ ଅଗ୍ନି ସଂଯୋଗ କରାଗଲା ।

ଶ୍ରୀଯୁକ୍ତ ଜାତୀୟ କବି ବୀରକିଶୋର ଦାସ ଆଚାର୍ଯ୍ୟଙ୍କର ଏହି ମହାପ୍ରୟାଣକୁ ଲକ୍ଷ୍ୟ କରି କାନ୍ଦି କାନ୍ଦି ଲେଖିଥିଲେ,—

'ଦେବତାଏ ତାଙ୍କୁ ନେଲେଣି ପାଛୋଟି
ନିଜ ରାଇଜକୁ ଗଲା ସେ ନେଉଟି
କିଏ ସେ କହିବ କେଉଁ ଦେବତା ସେ
ନରଦେହ ଧରି ଆସିଥିଲା
ଏଠି ଆସିଥିଲା ।'



# ଭଲ ମଣିଷ ହୁଅ

## ପରିଶିଷ୍ଟ – ୧

### ହିନ୍ଦୁର ସନାତନ ଧର୍ମ ଏବଂ ବିନୋବାଜୀ ଓ ଆଚାର୍ଯ୍ୟ ହରିହର

'ମହାଭାରତ'ରେ ଉଲ୍ଲେଖ ଅଛି,—'ପୀଡ଼ିତ ବ୍ୟକ୍ତିଙ୍କୁ ଶଯ୍ୟା ଦାନକରିବ, କ୍ଳାନ୍ତ ଶ୍ରାନ୍ତ ହୋଇ ପଡ଼ିଥିବା ବ୍ୟକ୍ତିଙ୍କୁ ଆସନ ଦାନ କରିବ, କ୍ଷୁଧାର୍ତ୍ତ ବ୍ୟକ୍ତିଙ୍କୁ ଖାଦ୍ୟ ଦାନକରିବ, ଗୃହାଗତ ବ୍ୟକ୍ତିପ୍ରତି ଦୃଷ୍ଟିପାତ କରିବ, ତାଙ୍କ ପ୍ରତି ମନ ଅର୍ପଣ କରିବ ଓ ତାଙ୍କୁ ମିଷ୍ଟବାକ୍ୟ କହିବ । ଏହି ରୂପ ଆଚରଣକୁ ହିଁ ସନାତନ ଧର୍ମ କୁହାଯାଏ ।

ଆଚାର୍ଯ୍ୟ ହରିହର ତାଙ୍କର ସାରା ଜୀବନ ଏହି ସନାତନ ଧର୍ମର ଅନୁଶାସକମାନଙ୍କୁ ଅକ୍ଷରେ ଅକ୍ଷରେ ପାଳନ କରିଥିଲେ । ଏଥି ସକାଶେ ସେ ପ୍ରଥମତଃ ମହାତ୍ମା ଗାନ୍ଧୀ ଓ ଦ୍ୱିତୀୟତଃ ବିନୋବାଭାବେଙ୍କୁ ଗୁରୁ ରୂପେ ଗ୍ରହଣ କରିଥିଲେ । ଏହାର ବୀଜତ ତାଙ୍କଠାରେ ଅଙ୍କୁରିତ ହୋଇଥିଲା । ପୁରୀରେ ଜିଲ୍ଲା ସ୍କୁଲରେ ପଢୁଥିବା ସମୟରେ ଦରିଦ୍ରର ପୂଜାରୀ ଗୋପବନ୍ଧୁ ଦାଶଙ୍କ ଦ୍ୱାରା ଏହି ବୀଜ କ୍ରମେ କ୍ରମେ ପରିବର୍ଦ୍ଧିତ ହୋଇ ବିନୋବାଜୀଙ୍କ ଅମଳରେ ଭୂଦାନ ଯଜ୍ଞ ସମୟରେ ଏକ ମହାଦ୍ରୁମରେ ପରିଣତ ହୋଇଥିଲା । ତାହାର ସାମ୍ୟ ଦର୍ଶାଇବା ନିମନ୍ତେ ତା ୧୨।୫।୮୦ 'ସମାଜ'ର ଅଗ୍ରଲେଖାରେ ପ୍ରଦତ୍ତ ହୋଇଥିବା 'ହିନ୍ଦୁନୀତି କହେ'ରୁ ସମ୍ପୂର୍ଣ୍ଣ ରୂପେ ଉଦ୍ଧାର କରାଗଲା ।

'ବର୍ତ୍ତମାନ ଆମ ଦେଶରେ ଦଳଗତ ରାଜନୈତିକ ବିବାଦ, ଗୋଷ୍ଠୀଗତ ସଂଘର୍ଷ, ବ୍ୟକ୍ତିଗତ ଶତ୍ରୁତା ଏବଂ ଲୋଭଜନିତ ଈର୍ଷା ଓ ଦ୍ୱେଷ ବୃଦ୍ଧିପ୍ରାପ୍ତ ସମାଜର ପରିସ୍ଥିତିକୁ ଏପରି ଜଟିଳ ଓ କୁଟୀଳ କଲାଣି ଯେ, କେହି କାହାକୁ ଆଉ ବିଶ୍ୱାସ କରିପାରୁ ନାହାନ୍ତି । ଘଟଣାଚକ୍ରରେ କାଲିର ବନ୍ଧୁ ଆଜିର ଶତ୍ରୁ, ଆଜିର ଶତ୍ରୁ କାଲିର ବନ୍ଧୁ ସାଜୁଛନ୍ତି । କପଟି ବ୍ୟବହାର, କୁଟିଳ ବଚନ, କଳଙ୍କ ଲେପନ ଏବଂ ଧନକାଞ୍ଚନ ଆହରଣ ଓ ସେସବୁକୁ ସାର୍ଥକ ଭାବରେ କାର୍ଯ୍ୟକାରୀ କରିବାପାଇଁ ବୌଦ୍ଧିକ ସାଧନ ଏପରି ପ୍ରାଧାନ୍ୟ ଲଭି କଲାଣି ଯେ, କେହି କାହାପ୍ରତି ମୁହଁଟେକି ଚାହିଁ ପାରୁନାହାନ୍ତି । ନ୍ୟାୟୋଚିତ ବିଚାରରୁ, ନିରପେକ୍ଷ ଦୃଷ୍ଟିରୁ, ମତଗତ ଆଦର୍ଶରୁ ଓ ନିର୍ମଳ ବିଚାର ବୁଦ୍ଧିରୁ ପରିଚ୍ଛିନ୍ନ

ବିଷୟରେ ମତପ୍ରକାଶ କରିବା ଭଳି ଲୋକ ବହୁତ କମ୍ ଦେଖାଯାଉଛନ୍ତି । କୌଣସି ଦଳର ଅନ୍ତର୍ଭୁକ୍ତ ହୋଇଗଲେ ମନରେ ନିରପେକ୍ଷତା ପୋଷଣ କରିବା ସହଜ ହୁଏ ନାହିଁ । ଏ ଅବସ୍ଥା ଦେଖି ଏହାର ପ୍ରତିକାର ବିଷୟରେ ସନ୍ଥ ବିନୋବାଜୀଙ୍କ ଭଳି ଆଗ୍ରହୀ ଗାନ୍ଧିଜୀଙ୍କ ମତ ଓ ଆଦର୍ଶ ଅନୁରୂପ ପରିସ୍ଥିତିର କୌଣସି ଗୋଟାଏ ସମାଧାନ ପନ୍ଥା ଉଦ୍ଭାବନ କରିବାରେ ଲାଗିଛନ୍ତି । ସେଥିପାଇଁ 'ଆଗ୍ରହୀ କୁଳ' ନାମରେ ଗୋଟିଏ ସଂଗଠନ କରି ସେମାନଙ୍କ ମାଧ୍ୟମରେ ଏକ ନୈତିକ ଚିନ୍ତାଧାରା ପ୍ରବାହ ବୁହାଇ ସେ ମାର୍ଗରେ ସମସ୍ୟାର ସମାଧାନ ପାଇଁ ଏବଂ ସେଥିସକାଶେ ଜାତୀୟ ଓ ମାନବିକ ସମୂହ ଶକ୍ତି ଗଠନ ପାଇଁ ଯେଉଁ ଯୋଜନା କରିଛନ୍ତି, ତାହା ଏକ ସ୍ୱତନ୍ତ୍ର କର୍ମୀଙ୍କ ହାତରେ ଲୋକଙ୍କ ଆଗରେ ଉପସ୍ଥାପିତ କରିବା ସକାଶେ ଲେଖକଙ୍କ ପାଖକୁ ପଠାଇଛନ୍ତି । ଝିଟିପିଟି କାନ୍ଥ ଉପରେ ବସି ଠିକ୍ ଠିକ୍ କହିବା ସୂତ୍ରରେ ସନ୍ଥବିନୋବାଜୀଙ୍କର ସେହି ବାଣୀ ଯେପରି କି ପ୍ରଚାର କରୁଛି । ତାଙ୍କ ପରିକଳ୍ପନାର ଏହି ପୂର୍ଣ୍ଣରୂପ ଓଡ଼ିଆରେ ଅନୁବାଦ କରି ତଳେ ପ୍ରକାଶ କରାଗଲା,—

ଆଗ୍ରହୀ କୁଳ ସଙ୍ଗଠନ

ଜାତିର ଦୁର୍ଗତି ।

ସାଧାରଣ ଭାବେ ପୃଥିବୀର ବିଶେଷ ଭାବରେ ଭାରତର ସମାଜିକ, ଅର୍ଥନୈତିକ ଏବଂ ରାଜନୈତିକ ପରିସ୍ଥିତିର ଆଲୋଚନା କରି ବିନୋବାଜୀ ଥରେ କହିଥିଲେ, 'ଆପଣମାନେ ଲକ୍ଷକରିଥିବେ ବାବା, ଆଜକାଲି ପ୍ରାୟ ହସୁଛନ୍ତି ; କାରଣ କାନ୍ଦିବାଟା ଠିକ୍ ନୁହେଁ । ଯଦିଓ ଆଜିକାଲିର ଅବସ୍ଥା ଯାହା, ସେଥିରେ ଆଖିକୁ ଲୁହ ଆସିଯିବ । ଅଧିକନ୍ତୁ ବାବା ହସିବାର କାରଣ ହେଉଛି ଏହିସବୁ ଦୁର୍ଗତିର ପ୍ରତିକାର କ'ଣ ତାହା ବାବା ଜାଣି ସାରିଲେଣି । ଏହି ପ୍ରତିକାର ଭାରତର ଜନସାଧାରଣ ଜାଣିପାରିଲେ ସେମାନେ ମଧ୍ୟ ହସିବେ ବୋଲି ବାବା ଜାଣନ୍ତି । ଏହି ଶୁଭ ସଙ୍କେତ ଦେଖି ବାବା ହସୁଛନ୍ତି । ତାଙ୍କ ହସିବାର ଆଉ ଗୋଟିଏ କାରଣ ହେଉଛି ସେ ଜାଣନ୍ତି ଯେ, ଏହି ପୃଥିବୀ ଅନିତ୍ୟ । ଏହାର ଅସ୍ତିତ୍ୱରେ ବିଶେଷ ବାସ୍ତବତା ନାହିଁ ବୋଲି ବାବା ଅନୁଭବ କରନ୍ତି । ମୁଁ କହିଲି ଯେ, ଭାରତର ପରିସ୍ଥିତି ଗୁରୁତର । ଦେଶରେ କି ଗୁରୁତର

କାଣ୍ଡସବୁ ଘଟୁଛି ବୋଲି ନ ପଗୃରି କି ଦୁର୍ଯୋଗ ନ ଘଟୁଛି ବୋଲି ପଗୃରିବା ଅଧିକ ସମୀଚୀନ ହେବ । × × × ×

୧୯୬୮ ସାଲରେ ବିଦ୍ୱଜ୍ଜନମାନଙ୍କର ଏକ ସମାବେଶରେ ଭାଷଣ ପ୍ରସଙ୍ଗରେ ବିନୋବାଜୀ ଉଲ୍ଲିଖିତ ମନ୍ତବ୍ୟ କରିଥିଲେ । ସେହିଦିନଠାରୁ ଏଥି ମଧ୍ୟରେ ଭାରତର ଅବସ୍ଥାରେ ଉନ୍ନତି ହେବା ପରିବର୍ତ୍ତେ ଅବନତି ଘଟିଛି । ଏହା ବର୍ତ୍ତମାନ ବଡ଼ ଉଦ୍‌ବେଗର କାରଣ ହେଲଣି । ରାଜନୈତିକ ଜୀବନରେ ଅଧୋଗତି ବର୍ତ୍ତମାନ ଏକ ବିଶ୍ୱବ୍ୟାପୀ ଘଟଣା । ଭାରତରେ ଏହା ଦ୍ରୁତ ଗତିରେ ଘଟୁଛି । ପୂର୍ବର ମୂଲ୍ୟବୋଧ ଲୋପପାଇ ଯାଉଛି, କିନ୍ତୁ ତା ସ୍ଥାନରେ ନୂତନ ମୂଲ୍ୟବୋଧର ଅଭ୍ୟୁଦୟ ହେଉ ନାହିଁ । ଏହି କାରଣରୁ ଲୋକ, ବିଶେଷରେ ଯୁବକଙ୍କ ମଧ୍ୟରେ ବୁଦ୍ଧିଭ୍ରମ ଘଟୁଛି । ଏହି ଅବସ୍ଥାରୁ ସମାଜକୁ କିଏ ରକ୍ଷା କରିବ ? ପ୍ରେମ ଓ ପ୍ରଜ୍ଞା ବଳରେ କିଏ ଯଥାର୍ଥ ନେତୃତ୍ୱ ଦେବ ? × × × ×

ଆମେ ନିଜେ ରାଜନୀତିରେ ଜଡ଼ିତ ହୋଇ ପଡ଼ିଲେ ଆମେ ଆଉ ଏହାର ନିରପେକ୍ଷ ଦ୍ରଷ୍ଟା ହୋଇପାରିବା ନାହିଁ କିମ୍ବା ବିପଥରୁ ଏହାକୁ ଅଟକାଇ ପାରିବା ନାହିଁ । ଆମେ ରାଜନୀତିର ଚକର ଗୋଟିଏ ଗୋଟିଏ ଅରରେ ପରିଣତ ହୋଇଯିବା । ତେଣୁ ଆଚାର୍ଯ୍ୟକୁଳ ରାଜନୀତିରୁ ସଂମ୍ପୂର୍ଣ୍ଣଭାବେ ଅଲଗା ରହିବା ଦରକାର । ଏହା ହେଉଛି ଆଚାର୍ଯ୍ୟମାନଙ୍କର ସ୍ୱଧର୍ମ ବା କର୍ତ୍ତବ୍ୟ । ଆଚାର୍ଯ୍ୟକୁଳ ରାଜନୀତି କେଉଁ ବାଟରେ ଯାଉଛି, ତାହା ଉପରେ ତୀକ୍ଷ୍ଣ ଦୃଷ୍ଟି ରଖିବେ । ଏହା ତାଙ୍କର ଗୋଟିଏ ଅଧ୍ୟୟନର ବସ୍ତୁ । ଏକ ବିଶ୍ୱଜନୀନ ଓ ସହାନୁଭୂତିଶୀଳ ଦୃଷ୍ଟିଭଙ୍ଗୀ ନେଇ ଆଚାର୍ଯ୍ୟକୁଳକୁ ରାଜନୀତିର ଗତିକୁ ଲକ୍ଷ୍ୟ କରିବାକୁ ହେବ । ଏହିପରି ଭାବରେ ବିନୋବାଜୀ ଓ ଆଚାର୍ଯ୍ୟ ହରିହରଙ୍କ ମଧ୍ୟରେ ଯେଉଁ ସାମ୍ୟ ଓ ସାଦୃଶ୍ୟ ପରିଲକ୍ଷିତ ହୁଏ ତାହା ବିଗୃରକୁ ଆଣିଲେ ସ୍ୱତଃ ପ୍ରାଣରେ ଏକ ଅଲୌକିକ ଭାବର ଉଦ୍ରେକ ହୁଏ । ଆହା, ଏହି ଦୁଇଜଣ ହେଲେ ବର୍ତ୍ତମାନ ପରିସ୍ଥିତିରେ ଭାରତର ସାମାଜିକ ନେତୃତ୍ୱ ଗ୍ରହଣ କରି, ଏ ଦେଶକୁ ପରିଗୃଳିତ କରୁଥାନ୍ତେ ।

# ଭଲ ମଣିଷ ହୁଅ

## ପରିଶିଷ୍ଟ – ୨

### ନୟୀ ତାଲିମ କିମ୍ବା ମୌଳିକ ଶିକ୍ଷା ସମ୍ବନ୍ଧରେ ଆଚାର୍ଯ୍ୟ ଏବଂ ବିନୋବାଜୀଙ୍କର ଚିନ୍ତାଧାରା

ଆଚାର୍ଯ୍ୟ ହରିହର ଦାଶ କିପରି ଭାବରେ ମୌଳିକ ଶିକ୍ଷାର ନୂତନ ପଦ୍ଧତି ଅବଲମ୍ବନ କରି ଏହି ଶିକ୍ଷାକୁ ଏକ ନୂଆ ରୂପ ଦେଇଥିଲେ ତାହାର ଗୋଟିଏ ଦୃଷ୍ଟାନ୍ତ ପାଠକମାନଙ୍କୁ ଦେବା ଏହି ପରିଶିଷ୍ଟର ଉଦ୍ଦେଶ୍ୟ । ଏପରିକି ମହାତ୍ମା ଗାନ୍ଧୀ ମୌଳିକ ଶିକ୍ଷା ( Basic Education ) ସମ୍ବନ୍ଧରେ ଯେଉଁ ନୂତନ ତଥ୍ୟ ସବୁ ଆବିଷ୍କାର କରିଥିଲେ ଏବଂ ବିନୋବାଜୀ ଯେଉଁ ଶିକ୍ଷା ପଦ୍ଧତିକୁ ବିଦ୍ୟାଳୟମାନଙ୍କରେ ଗ୍ରହଣ କରିବା ନିମନ୍ତେ ବୁଲି ବୁଲି ପ୍ରଚାର କରୁଥିଲେ ଏବଂ ଶିକ୍ଷା ସମ୍ବନ୍ଧରେ ବହୁ ଗ୍ରନ୍ଥ ପ୍ରଣୟନ କରିଥିଲେ, ତାହା ବହୁପୂର୍ବରୁ ୧୯୧୨ କିମ୍ବା ୧୯୧୩ ରେ ସତ୍ୟବାଦୀ ବନବିଦ୍ୟାଳୟରେ ଗୋପବନ୍ଧୁ ଦାସ ଓ ନୀଳକଣ୍ଠ ଦାଶଙ୍କ ସହିତ ଆଚାର୍ଯ୍ୟ ହରିହର ଆନ୍ତରିକତା ପୂର୍ଣ୍ଣ ସହଯୋଗ ଦେଖାଇ କହୁଥିଲେ 'ଭାରତର ପ୍ରାଚୀନ ଶିକ୍ଷାପ୍ରଣାଳୀ ହିଁ ଆଦର୍ଶ ପଦ୍ଧତି' । ପ୍ରାଚୀନ ଗୁରୁକୁଳ ଆଶ୍ରମରେ ଛାତ୍ରମାନେ ଏହି ପ୍ରକାର ଧନ୍ଦାଭିମୁଖୀ ଶିକ୍ଷାଲାଭ କରି ସଂସାର କ୍ଷେତ୍ରରେ ପ୍ରବେଶ କରୁଥିଲେ । ତେଣୁ ସତ୍ୟବାଦୀ ବନବିଦ୍ୟାଳୟରେ କୌଣସି କାର୍ଯ୍ୟ ସାହାଯ୍ୟରେ ବିଦ୍ୟାଶିକ୍ଷା କରିବାର ପ୍ରଚେଷ୍ଟା କରାଯାଉଥିଲା । ଏହିଠାରେ ସୂତା କାଟିବାଠାରୁ ହାତତନ୍ତରେ ଖଦଡ଼ ଲୁଗା ବୁଣିବା ପର୍ଯ୍ୟନ୍ତ ସବୁକାର୍ଯ୍ୟ ପ୍ରାୟ ଛାତ୍ରମାନଙ୍କୁ ଶିକ୍ଷା ଦିଆଯାଉଥିଲା । ତେଣୁ ଉତ୍କଳକବି ମଧୁସୂଦନ ରାଓଙ୍କ ବିଦ୍ୟା ଓ ସୁଶୀଳତା ଯାହା ୧୮୮୦-୮୧ ମସିହା ମଧ୍ୟରେ ରଚିତ ହୋଇଥିଲା । ତାହାର ସାରମର୍ମକୁ ଅକ୍ଷରେ ଅକ୍ଷରେ ସତ୍ୟବାଦୀ ବନ ବିଦ୍ୟାଳୟରେ ପାଳନ କରାଯାଉଥିଲା ।

## ବିଦ୍ୟା

"ବିଦ୍ୟା ଅଟଇ ମହାଧନ
ବାଳକେ କର ଉପାର୍ଜନ
ବିଦ୍ୟା ଅଟଇ ମହାରତ୍ନ
ହୃଦୟେ ଯେନ କର ଯତ୍ନ
ବିଦ୍ୟା ଅଟଇ ମହାମିତ୍ର
ସେ ସଙ୍ଗେ ହୁଅନ୍ତେ ପବିତ୍ର
ବିଦ୍ୟା ଅଟଇ ମହାବଳ
ସେ ବଳେ ଜିଣ ଭୂମଣ୍ଡଳ ।"

## ସୁଶୀଳତା

"ବିନୟ ଭାବ ବହି ମନେ
ସଂସାର ଚଳେ ସଯତନେ
ସୁଶୀଳ ଶାନ୍ତ ଯାର ପ୍ରାଣ
ଲଭଇ ନିତ୍ୟ ସେ କଲ୍ୟାଣ
କପଟ ଚିନ୍ତା ପରିହରି
ସରଳ ଭାବ ହୃଦେ ଧରି
ଭାଷିଣ ସତ୍ୟ ପ୍ରିୟ ବାଣି
ତୋଷିବ ନିତ୍ୟ ସର୍ବପ୍ରାଣୀ ।"

ବିନୋବାଜୀ ତାଙ୍କର ଶିକ୍ଷାତତ୍ତ୍ୱ ପୁସ୍ତକରେ ଉଲ୍ଲେଖ କରିଅଛନ୍ତି କି ଏ ଦିଗରୁ ବିଗ୍ଚର କଲେ ଭୂଦାନ ଯଜ୍ଞର ପୁରୋଧା ଏବଂ ନୟୀ ତାଲିମ କିମ୍ବା ମୌଳିକ ଶିକ୍ଷାର ( Basic Education ) ପୃଷ୍ଠପୋଷକ ବିନୋବାଜୀଙ୍କ ଶିକ୍ଷାଚିନ୍ତା ସହିତ ମଧୁସୂଦନଙ୍କର ଶିକ୍ଷାଚିନ୍ତାର ଯଥେଷ୍ଟ ମୌଳିକ ସାମଞ୍ଜସ୍ୟ ଧାରା ପରିଲକ୍ଷିତ ହୁଏ । ବିନୋବାଜୀଙ୍କ ମତରେ ଶିକ୍ଷାର ଦୁଇଟି ବିଷୟ ଦେଖିବାକୁ ପଡ଼େ । ପ୍ରଥମଟି ହେଉଛି ଯେଉଁ ଶିକ୍ଷା ଦିଆଯାଉଛି ତାହା ଲୋକ ସାଧାରଣଙ୍କ ଖର୍ଚ୍ଚରେ ଦିଆଯାଉଛି । ତେଣୁ ତାହା ପ୍ରତ୍ୟେକ ବ୍ୟବହାରରେ ଲାଗିବା ଉଚିତ୍ । ବାଳକ ଏପରି

ଶିକ୍ଷା ପାଇବ ଯେ ଶିକ୍ଷିତ ହେବା ପରେ ସମର୍ଥ ହୋଇ ସଂସାରର ସେବାଲାଗି ଆଗଭର ହୋଇ ବାହାରିବ ଓ ସେ ଯେତେ ପାଇଥିବ ତାହାର ଦଶଗୁଣ ସେ ଅନ୍ୟମାନଙ୍କୁ ଦେଇଯିବ । ଏକ ସେର ବିହନ ବୁଣିଲେ ଯେପରି ତାହା ପଚାଶ ସେର ହୋଇଯାଏ; ସେହିପରି ଗୁରୁ ଶିଷ୍ୟ-ଭୂମିରେ ଯେଉଁ ବିଦ୍ୟାର ବୀଜ ରୋପିତ ହୋଇଥିବ, ତାହା ଦଶ କୋଡ଼ିଏ ଗୁଣ ହୋଇଯିବା ଉଚିତ୍ ।

ଶିକ୍ଷାର ଆଉ ଗୋଟିଏ କଥା ମଧ୍ୟ ପ୍ରତ୍ୟାଶା କରାଯାଏ ଯେ ଯେତେ ଯେତେ ଶକ୍ତି ଅଛି, ସେ ସବୁ ମୁନିଋଷିମାନେ ଆମ୍ଭଙ୍କୁ ବୁଝାଇ ଦେଇଅଛନ୍ତି । 'ଅନନ୍ତଂ ହି ମନଃ, ଅନନ୍ତାଃ ବିଶ୍ୱେଦେବା'—ବିଶ୍ୱଦେବ ଅନନ୍ତ ମନମଧ୍ୟ ଅନନ୍ତ । ଆମେ ଯେତେବେଳେ ମନର ଗୋଟିଏ ଗୋଟିଏ ବୃତ୍ତି ଓ ଶକ୍ତିକୁ ବିଶ୍ଳେଷଣ କରି ବସୁ ସେତେବେଳେ ତା'ର ଅନେକାନେକ ଗୁଣର ଆଭାସ ମିଳିଥାଏ । ଆତ୍ମା ସଚ୍ଚିଦାନନ୍ଦମୟ ଅଟେ । ତାହାର ସାନ୍ନିଧ୍ୟ ହେତୁ ମନରେ ବହୁବିଧ ଗୁଣର ଛାୟା ପ୍ରତିବିମ୍ବିତ ହୋଇ ଉଠେ ।

"ଆମକୁ ଅନୁଭବୀ ପୁରୁଷ ଶିଖାଇଛନ୍ତି ଯେ ସେହି ହେଉଛି ବଡ଼ ଶିକ୍ଷା, ଯାହାଦ୍ୱାରା ଆମେ ନିଜେ ନିଜକୁ ମନ ଓ ଶରୀରଠାରୁ ଭିନ୍ନ ବୋଲି ଚିହ୍ନିପାରୁ ।"

"ପ୍ରାଚୀନ କାଳରେ ଯଦି କୌଣସି ବିଦ୍ୟାର୍ଥୀ ଗୁରୁ ନିକଟକୁ ଯାଇ କେବଳ ବିଦ୍ୟାର୍ଜନ କରୁଥିଲା, ତେବେ ତାହାକୁ ବିଦ୍ୟା-ସ୍ନାତକ କୁହାଯାଉଥିଲା । ତାହାକୁ ନିଜେ ନିଜେ ଜପ୍ତ କରିବାକୁ ପଡ଼ୁଥିଲା । ଆତ୍ମଦମନ, ଆତ୍ମନିଗ୍ରହ ମନ କଳା ଯେ ଶିଖୁଥିଲା ତାହାକୁ ବ୍ରତ-ସ୍ନାତକ କୁହାଯାଉଥିଲା ।"

ଏହି ବିଦ୍ୟାସ୍ନାତକ ଏପରି ଶୀରୋନ୍ମାଦରେ ସଂସାରରେ ପ୍ରବେଶ କରିବ ଯେ 'ନମଯୁଖିବ ଗଡ ଧରିବୀଂ'—ସତେ କି ସେ ଗୃଳିଲା ବେଳକୁ ପୃଥିବୀ ଦବି ଯାଉଛି । ଏହାର ଅର୍ଥ ନୁହେ ଯେ, ବିଦ୍ୟାର୍ଥୀ ଉଦ୍ଧତ

ହୋଇପିବ; ତା'ଠାରେ ନମ୍ରତା ତ ନିଶ୍ଚୟ ରହିଥିବ, କାରଣ ଜ୍ଞାନ ଲାଭ କରିଥିବା ବ୍ୟକ୍ତି ଜ୍ଞାନ କେତେ ଅନନ୍ତ ଓ ସେଥିରୁ କେତେ ଅଳ୍ପ ଅଂଶ ପାଇଛି ତାହା ଜାଣିଥିବ। × × × କିନ୍ତୁ ନମ୍ରତା ସାଙ୍ଗକୁ ଦୃଢ଼ ନିଷ୍ଠାପୂତା, ଆତ୍ମବିଶ୍ୱାସ, ଧୈର୍ଯ୍ୟ ନିର୍ଭୀକତା ଆଦି ସବୁ ଗୁଣଗୁଡ଼ିକ ବିଦ୍ୟାର୍ଥୀ ମଧ୍ୟରେ ରହିବା ବିଧେୟ । ଗୃହ ସଂସାରରେ ପ୍ରବେଶ କଲାବେଳେ ବିଜୟୀ ବୀର ଭଳି ପ୍ରବେଶ କରିବ । ବେଦରେ ଗୋଟିଏ ମନ୍ତ୍ର ଅଛି, ବେଦାଧ୍ୟୟନ ପରିପୂର୍ଣ୍ଣ କଲାବେଳେ ଗୃହ କହୁଛି 'ମହ୍ୟଂ ନମନ୍ତାଂ ପ୍ରଦିଶଶ୍ ଚତସ୍ରଃ'—ଏ ଗୃହଦିଗ ମୋ ଆଗରେ ନତ ହୁଅନ୍ତୁ । ଏ ପ୍ରକାର ବିଦ୍ୟା ଯଦି କେହି ହାସଲ କରିବେ ତେବେ ସେ ନିଜ୍ୱାସ ସାରା ଜଗତର ସେବା କରିପାରିବେ ।

ଏହି ପ୍ରକାର ସେବାପରାୟଣତାର ଭୂରି ଭୂରି ଦୃଷ୍ଟାନ୍ତ ଦେଖିବାକୁ ମିଳେ । ସତ୍ୟବାଦୀ ବନବିଦ୍ୟାଳୟରେ ଯେଉଁଠାରେ ୧୯୧୩ ମସିହାରେ ଗୋପବନ୍ଧୁଙ୍କ ଠାରୁ 'ଆଗ୍ରୂର୍ଯ୍ୟ' ଉପାଧି ପାଇ ଛାତ୍ରମାନଙ୍କର ଶାରୀରିକ, ମାନସିକ ଓ ନୈତିକ ଉନ୍ନତି ବିଧାନରେ ସେ ହୋମରେ ପୂର୍ଣ୍ଣାହୁତି ଦେଲାପରି ନିଜ ଜୀବନକୁ ଉତ୍ସର୍ଗ କରିଥିଲେ ।

